ସତ୍ୟାଗ୍ରହମାଳା ୪ର୍ଥ ଖଣ୍ଡ

# ଅନାସକ୍ତି ଯୋଗ

ଲେଖକ—ମହାତ୍ମା ଗାନ୍ଧୀ

ଅନୁବାଦକ

ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର

ମୂଲ୍ୟ ୫ ୦ ।୵

# ଅନାସକ୍ତି ଯୋଗ



(ମହାତ୍ମା ଗାନ୍ଧୀଙ୍କ ମୂଳ ଗୁଜରାଠୀ ଗ୍ରନ୍ଥରୁ ଅନୁବା,


**ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର**

ଅନୁବାଦକ ଓ ପ୍ରକାଶକ



ପ୍ରଥମ ସଂସ୍କରଣ

୧୯୩୧

ମୂଲ୍ୟ ଟ ୦ ।୵ ମାତ୍ର

# ଅନୁବାଦକର ନିବେଦନ



"As a character Buddha was the greatest the world has ever seen. next to him Christ, But the teachings of Krishna as taught by Geeta are the grandest the world has ever known. He who wrote that wonderful poem was one of those rare souls whose lives send a wave of regeneration through the world. The human race will never again see such a brain as his who wrote the Geeta."—*Inspired talks.*

—Swami Vivekananda

"ବୁଦ୍ଧ ଜଗତର ସର୍ବଶ୍ରେଷ୍ଠ ମହାପୁରୁଷ । ପୃଥିବୀର ଇତିହାସରେ ତାଙ୍କପରି ଅତିମାନବର ଆବିର୍ଭାବ ବିରଳ । ତାଙ୍କ ଉତ୍ତାରୁ ଯୀଶୁଖ୍ରୀଷ୍ଟଙ୍କର ସ୍ଥାନ । କିନ୍ତୁ ଗୀତାର ମଧ୍ୟ ଦେଇ ଶ୍ରୀକୃଷ୍ଣ ଯେଉଁ ତତ୍ତ୍ୱ ପ୍ରଚାର କରି ଅଛନ୍ତି ତାହା ଅତୀବ ମହାନ୍ । ବିଶ୍ୱରେ ତାହା ଅତୁଳନୀୟ । ଗୀତା ଏକ ଅପୂର୍ବ ଗ୍ରନ୍ଥ । ଗୀତାରଚୟିତାଙ୍କପରି ମହାତ୍ମା ବିରଳ । ଏହିପରି ମହାତ୍ମାମାନଙ୍କ ଜୀବନର ସ୍ପର୍ଶରେ ବିଶ୍ୱବ୍ୟାପୀ ସଞ୍ଜୀବନୀତରଙ୍ଗ ଖେଳିଯାଏ । ଗୀତାରଚୟିତାଙ୍କପରି ପ୍ରତିଭା ମାନବ ସମାଜରେ ଆଉ ସମ୍ଭବ ନୁହେଁ ।"

—ସ୍ୱାମୀ ବିବେକାନନ୍ଦ

ଦଣପକ୍ଷୀ ମେଲରୁ ପଳାଇଯାଇ କଲିକତାରେ ଥିଲାବେଳେ ୧୯୧୬ ମସିହାରେ ସ୍ୱାମୀ ବିବେକାନନ୍ଦଙ୍କର ଉପଯୁକ୍ତ ବାକ୍ୟ କେତୋଟି ପାଠ କରି ଗୀତାରେ କ'ଣ ଲେଖାଅଛି ତାହା ଜାଣିବାକୁ ହୃଦୟରେ ଏକ ତୀବ୍ର ଇଚ୍ଛା ଜାଗି ଉଠିଥିଲା । କଲିକତାରେ ମୁଁ ଯେଉଁ ଛାତ୍ରାବାସରେ ଥାଏ, ସେଠାରେ ପ୍ରତିସପ୍ତାହରେ ଗୀତା ପାଠ ହୁଏ । ଗୀତା ବିଷୟରେ ବହୁତ କଥା ଶୁଣିବାକୁ ପାଏ । ମୁଁ ମଧ୍ୟ ପ୍ରତିଦିନ ଗୀତାର କେତୋଟି ଶ୍ଳୋକ ନିୟମିତରୂପେ ଅର୍ଥ ସହିତ ପାଠ କରେ । କିନ୍ତୁ ମୋର ମନ 'ରାଜନୈତିକ ବିପ୍ଳବ କିପରି ସୃଷ୍ଟି ହେବ' ସବୁବେଳେ ଏହି ଚିନ୍ତାରେ ନିମଜ୍ଜିତ ରହିଥିବାରୁ, ଗୀତାରେ ବିପ୍ଳବବାଦର ଗୂଢ଼ଗୀତ କେବଳ ମୋତେ ଦେଖା ଯାଉଥାଏ । ଏହି କାରଣରୁ ଗୀତା ବିପ୍ଳବବାଦୀ ଦଳର ଧର୍ମଶାସ୍ତ୍ର ।

କଲିକତା ଛାଡ଼ି ସାବରମତୀ ଆଶ୍ରମରେ ଯୋଗ ଦେଲା ପରେ ଗୀତାର ଅର୍ଥ ମୋତେ ଅନ୍ୟପ୍ରକାର ବୁଝା ପଡ଼ୁଥିଲା । ସେହିଦିନୁ ମୋର ଏକ ବିଶ୍ୱାସ ହେଲା ଯେ ଗୀତାର ଅର୍ଥ ବଡ଼ ଗମ୍ଭୀର । ହୃଦୟରେ ଭଗବତ୍ ପ୍ରୀତିର ଅନୁଭୂତି ନ ହେଲେ ଗୀତାର ଅର୍ଥ ବୁଝିବା କଠିନ । ଏହା ପରେ ୧୯୨୨ ମସିହାରେ ଜେଲ୍‌ଖାନାର ନିର୍ଜନ କୋଠରୀରେ ଆବଦ୍ଧ ଥିଲାବେଳେ ଗୀତାର ଅଠର ଅଧ୍ୟାୟର ଶ୍ଳୋକମାନଙ୍କୁ ମୁଁ କଣ୍ଠସ୍ଥ କରିଥିଲି । ଦିନରେ ତିନଥର କରି ଗୀତାର ଅଠର ଅଧ୍ୟାୟ ପାଠ ପୁନରାବୃତ୍ତି କରୁଥିଲି । ଏହିପରିଭାବରେ ଗୀତାକୁ ତିନଥର କରି ପାଠ କରିବା ଦ୍ୱାରା ମୋ' ମନରେ ଯେଉଁ ସବୁ ଭାବ ଗୀତାର ଅର୍ଥ ବିଷୟରେ ଜାଗ୍ରତ ହୋଇଥିଲା, ସେହିସବୁ ଭାବକୁ ମୁଁ ଗୀତା ଓ ସ୍ୱରାଜ୍ୟ ନାମକ ପୁସ୍ତକରେ ପ୍ରକାଶ କରିଅଛି ।

୧୯୩୦ ମସିହାରେ ହଜାରିବାଗ ଜେଲ୍‌ଖାନାରେ ପୁଣି ଗୀତାକୁ ମନଯୋଗପୂର୍ବକ ଅଭ୍ୟାସରେ ପାଠ କରିବାର ସୁଯୋଗ ମିଳିଲା । ଏହା

ପୂର୍ବରୁ ତିଲକ ମହାରାଜଙ୍କର ଗୀତା ରହସ୍ୟ ପାଠ କରିଥିଲି । ଗୀତା ରହସ୍ୟ ପାଠ କରି ମୋ ମନରେ କେତେଗୁଡ଼ିଏ ନୂଆ ଭାବ ଜାଗିଥିଲା । ମୁଁ ଅନେକଥର ବସି ଭାବୁଥିଲି—'ଧର୍ମଗ୍ରନ୍ଥମାନଙ୍କର ମୂଳ ଉଦ୍ଦେଶ୍ୟ କ'ଣ ? ଧର୍ମଗ୍ରନ୍ଥରେ ଯେଉଁ ଉପଦେଶ ଅଛି ବାସ୍ତବ ଜୀବନ ସଂଗ୍ରାମରେ ତାହାର ସମ୍ବନ୍ଧ କେଉଁଠାରେ ? ଶାସ୍ତ୍ରାନୁମୋଦିତ ଧର୍ମ ଜୀବନ ସହିତ ମନୁଷ୍ୟର ସଂସାରିକ ଜୀବନ କ୍ରିୟାର ମେଳ ଅଛି କି ନାହିଁ ? ଧର୍ମଜୀବନ ଯାପନ କରିବାର ଇଚ୍ଛା କଲେ ମନୁଷ୍ୟକୁ ଲୋକ ସମାଜର ଦୈନନ୍ଦିନ ସଂଗ୍ରାମରୁ ଅଲଗା ହୋଇ ରହିବାକୁ ହେବ ନାହିଁ ! ବିଶେଷତଃ ଆମ୍ଭେମାନେ ପରାଧୀନ ଜାତି । ଆମ୍ଭର ଦେଶ ପରାଧୀନ । ଦେଶକୁ ସ୍ୱାଧୀନ କରିବା କ'ଣ ମନୁଷ୍ୟର ଧର୍ମ ନୁହେଁ ? ରାଜନୀତି ସହିତ ଧର୍ମର ମେଳ ଅଛି କି ନାହିଁ ? ମହାତ୍ମାଗାନ୍ଧୀ ତାଙ୍କର ରାଜନୈତିକ ଜୀବନକୁ ଧର୍ମ ସାଧନାର ଅଙ୍ଗ ବୋଲି ଅନେକବାର କହିଛନ୍ତି । ଗୀତା ଜଗତକୁ ଅହିଂସା ଧର୍ମ ଶିକ୍ଷା ଦେଉଅଛି ବୋଲି ମହାତ୍ମାଜୀଙ୍କର ବିଶ୍ୱାସ । ମହାତ୍ମାଜୀଙ୍କ ଜୀବନ ଗୀତାର ଉପଦେଶ ଉପରେ ପ୍ରତିଷ୍ଠିତ ।'

ବର୍ତ୍ତମାନ ଦେଶ କାଳ ପାତ୍ର ପ୍ରତି ଦୃଷ୍ଟି ଦେଇ ବିଚାର କଲେ ଭାରତର ମୁକ୍ତିପାଇଁ ପ୍ରାଣବଳି ଦେବା ଆମ୍ଭର ଏକମାତ୍ର ଧର୍ମ । ଏକ ପ୍ରକାର ବିଧି ବିଧାନ ଯୁଗ-ଯୁଗାନ୍ତର ଧରି ମନୁଷ୍ୟ ପାଇଁ ବିହିତ ହୋଇ ନ ପାରେ । କାରଣ ପ୍ରତ୍ୟେକ ଯୁଗରେ ମନୁଷ୍ୟର ଧର୍ମ ସମାନ ରହେ ନାହିଁ । ଦେଶ କାଳ ପାତ୍ରର ଭେଦ ଅନୁସାରେ ମନୁଷ୍ୟର ଧର୍ମ ତଥା କର୍ତ୍ତବ୍ୟ ପରିବର୍ତ୍ତିତ ହୁଏ । ବର୍ତ୍ତମାନ ଭାରତର ଅବସ୍ଥା ଅନୁସାରେ ସ୍ୱରାଜ୍ୟ ସ୍ଥାପନ କରିବା ଭାରତର ଯୁଗଧର୍ମ । ଏହି ଯୁଗଧର୍ମ ପାଳନ କରିବାକୁ ଯାଇ ଭାରତର ସନାତନ ଧର୍ମପ୍ରାଣର ବିଶେଷତ୍ୱ ବିକାଶ କରିବା ମଧ୍ୟ ଭାରତବାସୀର କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ କପରି ଭାବରେ ପାଳନ

କରିବାକୁ ହେବ ? ଗୀତାର ଉପଦେଶ ସହିତ ଏହାର ମିଳନ କେଉଁଠାରେ ? ଏହାକୁ ଅନୁସନ୍ଧାନ କରିବା ସହଜ ନୁହେଁ ।

ଏହିପରି ଅବସ୍ଥାରେ ମହାତ୍ମାଜୀଙ୍କ ଲିଖିତ ଗୀତାର ଟୀକା ମୂଳ ଗୁଜୁରାଟି ଭାଷାରେ ପାଠ କରିବା ପାଇଁ ଏହି ଜେଲଖାନା ଭିତରେ ମୋତେ ମିଳିଲା । ତାହା ପାଠକଲା ପରେ ମୁଁ ବୁଝିପାରିଲି ଗୀତାର ସାରମର୍ମ କ'ଣ, ଜୀବନର ସମସ୍ତ କର୍ମ କିପରି ଭାବରେ ସମ୍ପାଦନ କଲେ ତହିଁରେ ମନୁଷ୍ୟ ସୁଖ ଓ ଆନନ୍ଦ ଭୋଗକରି ପାରିବ ତାହା ମହାତ୍ମାଗାନ୍ଧୀଙ୍କ ଗୀତା ଅର୍ଥରୁ ବେଶ ଉପଲବ୍ଧ ହେବ । ଏଣୁ ଏହାର ଏକ ଓଡ଼ିଆ ଅନୁବାଦ ଲେଖିବାର ଆବଶ୍ୟକତା ବୋଧ କରି ଏହି ଅନୁବାଦ ଲେଖିଅଛି । ମୂଳ ଗୁଜୁରାଟି ଭାଷାରୁ ଏହା ଓଡ଼ିଆ ଭାଷାରେ ଅନୁବାଦିତ ହୋଇଅଛି । ଭାବ ନେଇ ନିଜ ଭାଷାରେ ମୁଁ ଏହାକୁ ଅନୁବାଦ କରିନାହିଁ । ମହାତ୍ମାଜୀଙ୍କ ଶବ୍ଦ ଓ ବାକ୍ୟମାନଙ୍କୁ ଯଥାସମ୍ଭବ ଅବିକଳଭାବେ ରଖି ଓଡ଼ିଆରେ ଅନୁବାଦିତ ହୋଇଅଛି । ଯେଉଁସବୁ ଗୁଜୁରାଟି ଶବ୍ଦ ମୋତେ ଅବୁଝା ଜଣାଯାଇଥିଲା ଶ୍ରୀଯୁକ୍ତ ଜୀବରାମ କଲ୍ୟାଣଜୀ କୋଠାରୀ ଏହି ହଜାରିବାଗ ଜେଲରେ ଥିବାରୁ ସେ ମଧ୍ୟ ମୋତେ ସାହାଯ୍ୟ କରିଛନ୍ତି । ମହାତ୍ମା ଗାନ୍ଧୀ ଏଥିରେ ସଂସ୍କୃତ ଶ୍ଳୋକ ଲେଖିନାହାନ୍ତି । ଗୁଜୁରାଟର ସାଧାରଣ ପଲ୍ଲୀବାସୀମାନଙ୍କ ସକାଶେ ସେ ଗୀତାର ଏହି ଟୀକା ଲେଖିଅଛନ୍ତି । ଉତ୍କଳର ପଲ୍ଲୀବାସୀମାନେ ଏହାକୁ ଆଗ୍ରହରେ ପାଠ କରିବାର ଦେଖିଲେ ମୁଁ ମୋର ପରିଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର



# ଭୂମିକା

—*—

( ୧ )

ସ୍ୱାମୀ ଅନନ୍ଦ ପ୍ରଭୃତି କେତେକଜଣ ମିତ୍ରଙ୍କର ପ୍ରେମପୂର୍ଣ୍ଣ ଅନୁରୋଧର ବଶବର୍ତ୍ତୀ ହୋଇ ସତ୍ୟର ସାଧନା ଲେଖିବାକୁ ଯାଇ ଯେପରି ନିଜର ଆତ୍ମକଥା ଲେଖିବାକୁ ଆରମ୍ଭ କଲି, ଅବିକଳ ସେହିପରି ପ୍ରେମର ବଶବର୍ତ୍ତୀ ହୋଇ ଗୀତାର ଅନୁବାଦ ଲେଖିବାକୁ ବସିଛି । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନବେଳେ ଥରେ ସ୍ୱାମୀ ଆନନ୍ଦ ମୋତେ କହିଥିଲେ, "ଗୀତାକୁ ଆପଣ ଯେପରି ଅର୍ଥ କରୁଛନ୍ତି ତାହା ବୁଝି ପଡୁନାହିଁ । ଆପଣ ସମୁଦାୟ ଗୀତାର ଗୋଟିଏ ଅନୁବାଦ ଲେଖନ୍ତୁ ଏବଂ ଯେଉଁଠାରେ ଯାହା କିଛି ଟୀକାଟିପଣୀ କରିବାକୁ ହୁଏ ତାହା ମଧ୍ୟ ଲେଖନ୍ତୁ । ସେହି ଅନୁବାଦକୁ ଆମ୍ଭେମାନେ ଥରେ ପଢିଲେ ପରେ, ଆପଣ କରୁଥିବା ଅର୍ଥ ବୁଝି ପଡନ୍ତା । ତାହା ନ ହେଲେ ଆପଣ ଏଠୁ ସେଠୁ ଗୋଟିଏ ଗୋଟିଏ ଶ୍ଳୋକ ବାଛି ତାର ଅର୍ଥ ଦର୍ଶାଇ ଅହିଂସାର ତତ୍ତ୍ୱକୁ ଯେପରି ବ୍ୟାଖ୍ୟା କରୁଛନ୍ତି ସେହି ଅର୍ଥ ଯଥାର୍ଥ ବୋଲି ମୋତେ ଜଣା ଯାଉନାହିଁ ।" ସ୍ୱାମୀ ଆନନ୍ଦଙ୍କର ଏହି ଆପତ୍ତି ମୋତେ ଯଥାର୍ଥ ଜଣାଗଲା । "ମୁଁ କହିଲି ସମୟ ପାଇଲେ ମୁଁ ଲେଖିବି ।" ଏହାପରେ ମୁଁ ଜେଲ ଗଲି । ସେଠାରେ ଗୀତାକୁ ଅଧିକ ଧ୍ୟାନ ପୂର୍ବକ ପାଠ କରିବାକୁ ସୁବିଧା ପାଇଲି । ଲୋକମାନ୍ୟ ତିଳକଙ୍କର ଜ୍ଞାନଭଣ୍ଡାରକୁ ପାଠ କଲି । ବହୁଦିନ ପୂର୍ବରୁ ସେ ଅତି ସ୍ନେହରେ ମୋ ନିକଟକୁ ମରହଟୀ, ହିନ୍ଦି, ଓ

ଗୁଜରାଟି ଅନୁବାଦ ପଠାଇ ଦେଇଥିଲେ ଏବଂ ଅନୁରୋଧ ମଧ୍ୟ କରିଥିଲେ ଯେ ଯଦି ମରହଟ୍ଟୀ ପଢ଼ି ନ ପାରେ ତେବେ, ଗୁଜରାଟି ଅନୁବାଦ ଯେପରି ନିଶ୍ଚୟ ପଢ଼େ । ଜେଲଖାନା ବାହାରେ ପଢ଼ିବାକୁ ସମୟ ମିଳି ନ ଥିଲା, କିନ୍ତୁ ଭିତରକୁ ଆସି ଗୁଜରାଟି ଅନୁବାଦ ପାଠ କଲି । ଏହାକୁ ପଢ଼ିଲା ପରେ ଗୀତା ବିଷୟରେ ଅଧିକ ପଢ଼ିବାକୁ ଇଚ୍ଛା ହେଲା । ସୁତରାଂ ଗୀତା ସମ୍ବନ୍ଧୀୟ ଅନେକ ପୁସ୍ତକ ଓଲଟ ପାଲଟ କରି ଦେଖିଲି ।

ଏଡ଼ଉଇନ୍ ଆର୍ନଲ୍ଡଙ୍କ ଗୀତାର ପଦ୍ୟ ଅନୁବାଦକୁ ୧୮୮୮ । ୮୯ ମସିହାରେ ମୁଁ ପାଠ କରିଥିଲି । ଏହା ହେଉଛି ଗୀତା ସହିତ ମୋର ପ୍ରଥମ ଦେଖା । ଏହାପରେ ଗୀତାର ଗୁଜରାଟି ଅନୁବାଦ ପାଠକରିବାକୁ ମୋର ଭାରି ଇଚ୍ଛା ହେଲା । ସୁତରାଂ ମୁଁ ଯେତେ ଅନୁବାଦ ପାଇଥିଲି ସବୁ ପାଠ କରିଥିଲି । କେବଳ ଏତିକି ପାଠ କରି ଏହାର ବଳରେ ଗୀତାର ଏକ ଅନୁବାଦ ଲେଖି ଲୋକସାଧାରଣଙ୍କ ଆଗରେ ରଖିବାକୁ ମୋର କିଛି ଅଧିକାର ନାହିଁ । ଏହାଛଡ଼ା ପୁଣି ସଂସ୍କୃତରେ ମୋର ଜ୍ଞାନ ଅଳ୍ପ । ଗୁଜରାଟି ଭାଷାର ସାହିତ୍ୟ ଜ୍ଞାନ ମୋର କିଛି ନାହିଁ କହିଲେ ଚଳେ । ତେବେ ଏପରି ଅବସ୍ଥାରେ ଗୀତାର ଏକ ବ୍ୟାଖ୍ୟା ଲେଖିବାକୁ ମୁଁ ଧୃଷ୍ଟତା କରୁଛି କାହିଁକି ?

ଗୀତାକୁ ମୁଁ ଯେପରି ବୁଝିଛି ସେହି ରୀତିରେ ମୁଁ ଓ ମୋ ସହିତ ରହିଥିବା କେତେକ ବନ୍ଧୁ, ଜୀବନ ଗଢ଼ିବାକୁ ସଦା ସର୍ବଦା ଯତ୍ନଶୀଳ ହୋଇ ଆସୁଅଛୁ । ଗୀତା ଆମ୍ଭମାନଙ୍କର ଏକମାତ୍ର ଆଧ୍ୟାତ୍ମିକ ନିଦାନ ଗ୍ରନ୍ଥ ଅଟେ । ତଦନୁସାରେ ଜୀବନ ଗଢ଼ିବାକୁ ଅଭ୍ୟାସ କରିବାରେ ପ୍ରତିଦିନ କେତେକ ଚେଷ୍ଟା ସଫଳ ହେଉନାହିଁ ସତ୍ୟ, ତଥାପି ଆମ୍ଭର ସାଧନାର ବିରାମ ନାହିଁ । ଆମ୍ଭମାନଙ୍କର ସାଧନା ସତ୍ତ୍ୱେ ମଧ୍ୟ ନିଷ୍ଫଳତା ଘଟୁଅଛି ଏବଂ ଏହି ନିଷ୍ଫଳତା ମଧ୍ୟରେ ଆମ୍ଭମାନଙ୍କର ସାଧନା ସଫଳ

ହେବାର ଅନେକ ଉଙ୍ଗ ଅସୁଥିବାର ଦେଖି ତାର ଅର୍ଥକୁ ଆମ୍ଭମାନେ ଝୁଙ୍କ ରହିଅଛୁଁ । ଏହି ଅଳ୍ପ ସଂଖ୍ୟକ ଯେ କେତେ ଜଣ ଲୋକ ଗୀତାର ଯେଉଁ ଅର୍ଥ ଅନୁସାରେ ନିଜ ଜୀବନ ଗଢ଼ିଅଛନ୍ତି ସେହି ଅର୍ଥ ଏହି ଅନୁବାଦରେ ଅଛି ।

ଏହାଛଡ଼ା ସ୍ତ୍ରୀ, ଶୂଦ୍ର, ବୈଶ୍ୟ ପ୍ରଭୃତି ଯେଉଁମାନଙ୍କର ପଢ଼ାଶୁଣା କମ, ମୂଳ ସଂସ୍କୃତ ଭାଷାରେ ଗୀତା ପାଠକରି ତାହାର ଅର୍ଥ ବୁଝିବାକୁ ଯେଉଁମାନଙ୍କର ଅବସର ନାହିଁ, କିମ୍ବା ଇଚ୍ଛା ମଧ୍ୟ ନାହିଁ, ଗୀତା ପାଠକରି ତହିଁର ଜ୍ଞାନ ଜାଣିବା ପୁଣି ଯେଉଁମାନଙ୍କର ସବୁଠାରୁ ବେଶି ଦରକାର, ସେହିମାନଙ୍କ ପାଇଁ କେବଳ ଗୀତାର ଏହି ଟୀକା ଲେଖା ହୋଇଅଛି । ଗୁଜରାଟି ଭାଷାର ଜ୍ଞାନ ମୋର ଅଧିକ ନ ଥିଲେ ମଧ୍ୟ, ମୋ ଭିତରେ ଯାହା କିଛି ଅଛି ସେ ସବୁ ଗୁଜରାଟି ଭାଷାରେ ମୋର ଗୁଜରାଟି ଭାଇମାନଙ୍କୁ ଦେଇଯିବାକୁ ମୁଁ ବଡ଼ ବ୍ୟସ୍ତ । ମୋର ଇଚ୍ଛା ଏହି ଯେ ଆଜିକାଲି ଯେପରି ଖରାପ ପୁସ୍ତକର ଢେଉ ମାଡ଼ି ଯାଉଛି, ଏପରି ସମୟରେ ହିନ୍ଦୁଧର୍ମର ଏହି ଅଦ୍ୱିତୀୟ ଗ୍ରନ୍ଥର ସରଳ ଅର୍ଥ ଲୋକଙ୍କ ଭିତରେ ପ୍ରଚାର ହେଉ । ଲୋକେ ଏହାକୁ ପଢି ସେହି ଢେଉର ଗତିକୁ ରୋଧ କରିବାକୁ ଶକ୍ତିଲାଭ କରନ୍ତୁ । ମୋର ଏପରି ଇଚ୍ଛା କରିବାରେ ଅନ୍ୟାନ୍ୟ ଗୁଜରାଟି ଅନୁବାଦ ପ୍ରତି ମୋର କୌଣସି ଅବଜ୍ଞା ନାହିଁ । ସେ ସବୁର ସ୍ଥାନ ରହୁ, ମାତ୍ର ସେହି ଟୀକାକାରମାନେ ଗୀତାକୁ ଆଚରଣ କରି ପାଇଥିବା ଅନୁଭବକୁ ଟୀକା ଲେଖିଛନ୍ତି ବୋଲି କହିଥିବାର ମୋତେ ଜଣା ନାହିଁ । ଏହି ଅନୁବାଦ ଭିତରେ ମୋର ୩୮ ବର୍ଷ ଆଚରଣର ଅନୁଭବ ରହିଅଛି । ଏଣୁ ମୋର ଆନ୍ତରିକ ଇଚ୍ଛା ଏହି ଯେ, ଯେଉଁ ଭାଇ ଭଉଣିମାନେ ଧର୍ମ ଅନୁସାରେ ନିଜ ନିଜ ଜୀବନ ଗଢିବାକୁ ଚାହାନ୍ତି ସେମାନେ ମୋର ଏହି ଅନୁବାଦକୁ ପାଠ କରନ୍ତୁ, ବୁଝନ୍ତୁ ଏବଂ ଶକ୍ତି ମଧ୍ୟ ଲାଭ କରନ୍ତୁ ।

ଏହି ଅନୁବାଦ ଭିତରେ ମୋର ସାଥିମାନଙ୍କର ବହୁତ ପରିଶ୍ରମ ଅଛି । ମୋର ସଂସ୍କୃତ ଜ୍ଞାନ ଅତି ଅଳ୍ପ । ତେଣୁ ଶବ୍ଦମାନଙ୍କର ଅର୍ଥ ଠିକ୍ ହୋଇଥିବା ବୋଲି ପୂରା ବିଶ୍ୱାସ ନ ପାଇବାରୁ, କେବଳ ଏହାଙ୍କ କରିବାପାଇଁ ଏହି ଅନୁବାଦକୁ ବିନୋବା, କାକାକାଲେଲକର, ମହାଦେବ ଦେଶାଇ, ଓ କିଶୋରଲାଲ ମଶରୁବାଲା ଦେଖିଛନ୍ତି ।

## ବର୍ତ୍ତମାନ ମୁଁ ଯେ ଗୀତାର ଅର୍ଥ ବୁଝାଉ ଅଛି

## ( ୨ )

ସନ ୧୮୮୮ । ୮୯ ମସିହାରେ ଯେତେବେଳେ ଗୀତାକୁ ମୁଁ ପ୍ରଥମେ ଦେଖେ ସେତେବେଳେ ମୁଁ ଭାବିଲି ଗୀତା ଗୋଟିଏ ଇତିହାସ ପୁସ୍ତକ ନୁହେଁ । ଏଥିରେ ସାଂସାରିକ ଯୁଦ୍ଧର ଉପମା ଦେଇ ମନୁଷ୍ୟର ଅନ୍ତଃକରଣରେ ନିରନ୍ତର ଚାଲିଥିବା ଦ୍ୱନ୍ଦ୍ୱ ଯୁଦ୍ଧକୁ ବର୍ଣ୍ଣନା କରାଯାଇଛି । ମନୁଷ୍ୟ ହୃଦୟ ଭିତରେ ଅବିରତ ଯେଉଁ ଯୁଦ୍ଧ ଚାଲିଛି, ତାହା ସମସ୍ତଙ୍କ ହୃଦବୋଧ କରିବା ସକାଶେ, ମନୁଷ୍ୟ ମନୁଷ୍ୟ ମଧ୍ୟରେ ଯେପରି ଯୁଦ୍ଧ ଘଟେ, ସେପରି ଗୋଟିଏ ଯୁଦ୍ଧକୁ ଉପମା ସ୍ୱରୂପ କଳ୍ପନା କରାଯାଇଛି । ଏହିପରି ଯେଉଁ ଭାବ ପ୍ରଥମେ ମୋ ମନରେ ଜାଗ୍ରତ ହେଲା, ଧର୍ମ ଓ ଗୀତା ବିଷୟ ନେଇ ବିଶେଷ ବିଚାର କରିବା ପରେ ସେହି ଭାବ ପରିପକ୍ୱ ଲାଭ କରିଅଛି । ମହାଭାରତ ପାଠ କରି ସେହି ଧାରଣା ଅଧିକ ଦୃଢ଼ ହୋଇଅଛି । ମହାଭାରତକୁ ଆଜକାଲିକାର ଅର୍ଥ ଅନୁସାରେ ମୁଁ ଇତିହାସ ଗ୍ରନ୍ଥ ବୋଲି ମନେକରେ ନାହିଁ । ଏହାର ଅକାଟ୍ୟ ପ୍ରମାଣ ଆଦିପର୍ବରେ ରହିଅଛି । ପାତ୍ରମାନଙ୍କର ଅମାନୁଷିକ ଓ ଅତ୍ୟମାନୁଷିକ ଉତ୍ପତ୍ତିର ବର୍ଣ୍ଣନା କରି ବ୍ୟାସଦେବ ରାଜାପ୍ରଜାଙ୍କର ଇତିହାସକୁ ରଦ କରି ଦେଇଛନ୍ତି । ଏଥିରେ ଯେଉଁମାନଙ୍କ ବିଷୟ ବର୍ଣ୍ଣନା କରାଯାଇଅଛି,

ମୂଳରେ ସେମାନଙ୍କ ସଂବନ୍ଧରେ ଐତିହାସିକ ପ୍ରମାଣ ଥାଇପାରେ, ମାତ୍ର ବ୍ୟାସ ଭଗବାନ କେବଳ ଧର୍ମକୁ ସମସ୍ତଙ୍କର ହୃଦବୋଧ କରାଇବା ପାଇଁ ସେମାନଙ୍କର ନାମକୁ ବ୍ୟବହାର କରି ଅଛନ୍ତି ।

ମହାଭାରତ ଲେଖକ ଭୌତିକ ଯୁଦ୍ଧର ଅବଶ୍ୟକତାକୁ ପ୍ରମାଣ ନ କରି ବରଂ ତାର ନିରର୍ଥତାକୁ ପ୍ରମାଣ ସହ ଦେଖାଇ ଅଛନ୍ତି । ସେ ବିଜେତାକୁ କନ୍ଦାଇ ଅଛନ୍ତି, ତାକୁ ପଶ୍ଚାତ୍ତାପ କରାଇଛନ୍ତି ଶେଷରେ ତା ଭାଗ୍ୟରେ କେବଳ ଦୁଃଖ ଛଡ଼ା ଅନ୍ୟ କିଛି ନଥିବାର ଦେଖାଇଛନ୍ତି ।

ଏହି ମହାଗ୍ରନ୍ଥରେ ଗୀତା ମୁକୁଟମଣି ପରି ବିରାଜୁଛି । ଗୀତାର ଦ୍ୱିତୀୟ ଅଧ୍ୟାୟ ଭୌତିକ ସମର କୌଶଳ ଶିକ୍ଷା ଦେବା ପରିବର୍ତ୍ତେ ସ୍ଥିତପ୍ରଜ୍ଞର ଲକ୍ଷଣ ଅର୍ଥାତ୍ ଗୁଣଧର୍ମ ଶିକ୍ଷା ଦେଉଅଛି । ସ୍ଥିତପ୍ରଜ୍ଞ ବ୍ୟକ୍ତିର ଯେଉଁ ଲକ୍ଷଣ ବର୍ଣ୍ଣନା କରାଯାଇଅଛି । ତାହା ପାଠକଲେ ଐହିକ ଯୁଦ୍ଧ ସହିତ ତାହାର କୌଣସି ପ୍ରକାର ସମ୍ବନ୍ଧ ଥିବାର ବିଶ୍ୱାସ ହୁଏ ନାହିଁ । ସାମାନ୍ୟ ଏକ ପାରିବାରିକ କଳହ ଭିତରେ ନ୍ୟାୟ ଓ ଅନ୍ୟାୟ ବାଛିବାକୁ ଯାଇ ଗୀତା ପରି ଏକ ଶାସ୍ତ୍ର ଲେଖିବା କଦାପି ସମ୍ଭବ ନୁହେଁ ।

ଗୀତାରୁ ଶ୍ରୀକୃଷ୍ଣ ପବିତ୍ରତା ଓ ପୂର୍ଣ୍ଣ ଜ୍ଞାନର ଏକ ସାକ୍ଷାତ୍ ମୂର୍ତ୍ତି ଅଟନ୍ତି । କିନ୍ତୁ ଏହା କାଳ୍ପନିକ ଅଟେ । ଏଥିପାଇଁ ମୁଁ କହୁନାହିଁ ଯେ ଶ୍ରୀକୃଷ୍ଣ ନାମରେ ଜଣେ କେହି ଅବତାର ପୁରୁଷ ନ ଥିଲେ । ମୋର କହିବାର ଉଦ୍ଦେଶ୍ୟ ଏହି ଯେ ଗୀତାରେ ଶ୍ରୀକୃଷ୍ଣଙ୍କୁ ଯେପରି ଚିତ୍ର କରାଯାଇ ଅଛି ତାହା କାଳ୍ପନିକ । ଏପରି ପୂର୍ଣ୍ଣ ଅବତାରର କଳ୍ପନା କେବଳ ପରେ ଆରୋପଣ କରାହୋଇଛି ।

ଅବତାର କହିଲେ ଶରୀରଧାରୀ ବ୍ୟକ୍ତି ବିଶେଷକୁ ବୁଝାଏ । ପ୍ରତ୍ୟେକ ଜୀବ ଈଶ୍ୱରଙ୍କର ଅବତାର ଅଟେ । କିନ୍ତୁ ସାଧାରଣ ଅର୍ଥରେ—ସମସ୍ତଙ୍କୁ ଅବତାର କୁହାଯାଏ ନାହିଁ । ଯେଉଁ ପୁରୁଷ ଆପଣାର ଯୁଗରେ ସର୍ବଶ୍ରେଷ୍ଠ ଧାର୍ମିକ ପୁରୁଷ ନାମରେ ଖ୍ୟାତ ହୁଅନ୍ତି, ତାହାଙ୍କୁ ସର୍ବ ପ୍ରଜା ଅବତାର ରୂପେ ପୂଜା କରନ୍ତି । ଏଥିରେ ମୋତେ କୌଣସି ଦୋଷ ଦେଖାଯାଉ ନାହିଁ, କିମ୍ବା ଏଥିରେ ମଧ୍ୟ ଈଶ୍ୱରଙ୍କର ମହତ୍ତ୍ୱକୁ ଖଣ୍ଡନ କରାହେଉ ନାହିଁ । କିମ୍ବା ସତ୍ୟପ୍ରତି କୌଣସି ଆଘାତ କରାଯାଉ ନାହିଁ । ମନୁଷ୍ୟ ଈଶ୍ୱର ନୁହେଁ, କିମ୍ବା ଈଶ୍ୱରଙ୍କଠାରୁ ମନୁଷ୍ୟ ମଧ୍ୟ ପୃଥକ୍ ନୁହେଁ । ଆପଣାର ବର୍ତ୍ତମାନ କାଳରେ ଯାହାଙ୍କଠାରେ ସର୍ବାପେକ୍ଷା ଅଧିକ ଧାର୍ମିକ ଗୁଣ ଏବଂ ଲକ୍ଷଣ ଦେଖାଯାଏ ତାହାଙ୍କୁହିଁ ବିଶେଷ ଅବତାର ବୋଲି ଲୋକେ ମାନନ୍ତି । ଏତାଦୃଶ ବିଶ୍ୱାସ ଧାରା ହେତୁ ଆଜି ଶ୍ରୀକୃଷ୍ଣରୂପୀ ପୂର୍ଣ୍ଣ ଅବତାର ହିନ୍ଦୁ ସଂସାରରେ ରାଜାଧିରାଜ ଅର୍ଥାତ୍ ସର୍ବଶ୍ରେଷ୍ଠ ଅବତାରରୂପେ ପୂଜା ପାଇ ଆସୁଛନ୍ତି ।

ଯାହା ମନୁଷ୍ୟର ଅନ୍ତିମ ଓ ପ୍ରିୟ ଅଭିଳାଷ, ଏହି ଦୃଶ୍ୟ କେବଳ ତାହାର ସୂଚନା ଦିଏ । ମନୁଷ୍ୟ ଈଶ୍ୱରଙ୍କ ସହିତ ଏକ ଅର୍ଥାତ୍ ଏକରୂପ ନ ହେବା ପର୍ଯ୍ୟନ୍ତ ତାହାର ସୁଖ ନାହିଁ କିମ୍ବା ଶାନ୍ତି ନାହିଁ । ଏପରି ଈଶ୍ୱର ରୂପ ଲାଭ କରିବାକୁ ସାଧନା କେବଳ ଏକମାତ୍ର ଶ୍ରେଷ୍ଠ ପୁରୁଷାର୍ଥ । ଏହା ମଧ୍ୟ ଆତ୍ମ ଦର୍ଶନ ଅଟେ । କିନ୍ତୁ ଗୀତା ଲେଖକ କେବଳ ଏହି ବିଷୟକୁ ପ୍ରତିପାଦନ କରିବା ପାଇଁ ଗୀତା ଲେଖି ନାହାନ୍ତି । ଆତ୍ମଦର୍ଶନ ଅଭିଳାଷୀ ବ୍ୟକ୍ତିକୁ ଆତ୍ମଦର୍ଶନ କରିବାର ଏକ ଅଦ୍ୱିତୀୟ ଉପାୟ ତଥା କୌଶଳ ବତାଇବା ଗୀତାର ଉଦ୍ଦେଶ୍ୟ । ହିନ୍ଦୁଧର୍ମ ଗ୍ରନ୍ଥ ଭିତ୍ତରେ ଯେଉଁ ବିଷୟ ନାନାସ୍ଥାନରେ ଏବଂ ନାନାପ୍ରକାରରେ ଦେଖାଯାଏ, ଭିନ୍ନ ଭିନ୍ନ ଶବ୍ଦଦ୍ୱାରା ଏବଂ ଭିନ୍ନ ଭିନ୍ନ ରୂପରେ ପୁନରୁକ୍ତି ଦୋଷକୁ ସ୍ୱୀକାର କରି ମଧ୍ୟ, ସେହି ବିଷୟକୁ ଗୀତାରେ ଅତି ଉତ୍ତମ ରୀତିରେ ବ୍ୟକ୍ତ କରାଯାଇ ଅଛି ।

ସେହି ଅଦ୍ୱିତୀୟ ଉପାୟଟି "କର୍ମଫଳତ୍ୟାଗ"। ଏହାକୁ କେନ୍ଦ୍ରକରି ଏହାର ଚତୁଃପାଖରେ ଗୀତାଗ୍ରନ୍ଥକୁ ସଜାଇ ରଖାହୋଇଛି । ଭକ୍ତି, ଜ୍ଞାନ ଇତ୍ୟାଦି ତାର ଚତୁଃଅଙ୍ଗରେ ତାରାମଣ୍ଡଳ ପରି ଏକାଠି ହୋଇ ରହିଛନ୍ତି । ଦେହଥିଲେ କର୍ମ ନିଶ୍ଚୟ ଅଛି । କର୍ମ କାହାକୁ ଛାଡ଼େ ନାହିଁ । ତଥାପି ଶରୀରକୁ ଭଗବାନଙ୍କର ବାସସ୍ଥାନ ତଥା ମନ୍ଦିର ମନେ କରି କର୍ମକଲେ ମନୁଷ୍ୟ ମୁକ୍ତି ପାଇପାରେ । ଏହିକଥା ସବୁ ଧର୍ମରେ କୁହାଯାଇଅଛି । ମାତ୍ର ପ୍ରତ୍ୟେକ କର୍ମରେ କିଛି ନା କିଛି ଦୋଷ ନିଶ୍ଚୟ ଅଛି । ମୋକ୍ଷ ଅଥବା ମୁକ୍ତି ପୁଣି ଦୋଷଶୂନ୍ୟ ପୁରୁଷକୁ କେବଳ ମିଳେ । ତେବେ କର୍ମ ବନ୍ଧନରୁ ଅର୍ଥାତ୍ ଦୋଷ ସ୍ପର୍ଶରୁ ମନୁଷ୍ୟ ମୁକ୍ତ ହେବ କିପରି ? ଏହି ପ୍ରଶ୍ନର ନିଶ୍ଚୟାତ୍ମକ ଉତ୍ତର ଦେବାକୁ ଯାଇ ଗୀତା କହେ "ନିଷ୍କାମ କର୍ମ ହାରି, କେବଳ ଯଜ୍ଞ ପାଇଁ କର୍ମ କରି, କର୍ମଫଳକୁ ତ୍ୟାଗକରି, ସମସ୍ତ କର୍ମକୁ କୃଷ୍ଣାର୍ପଣ କରି ଅର୍ଥାତ୍ କାୟ, ମନ, ବାକ୍ୟକୁ ଈଶ୍ୱରଙ୍କଠାରେ ସମର୍ପଣ କରି ମନୁଷ୍ୟ କର୍ମବନ୍ଧନରୁ ମୁକ୍ତି ଲାଭ କରି ପାରେ ।"

କିନ୍ତୁ ନିଷ୍କାମଭାବ କିମ୍ବା କର୍ମଫଳ ତ୍ୟାଗ କେବଳ କଥାରେ ହୁଏ ନାହିଁ । ଏହା ମଧ୍ୟ ବୁଦ୍ଧିର କାମ ନୁହେଁ । ହୃଦୟ ମନ୍ଥନରୁ ଏହା ମିଳେ । ଏହି ତ୍ୟାଗ ଶକ୍ତି ପାଇବା ପାଇଁ ଜ୍ଞାନ ଲୋଡ଼ା । ବହୁତ ପଣ୍ଡିତ ଏକପ୍ରକାର ଜ୍ଞାନ ପାଆନ୍ତି । ବେଦାଦି ଗ୍ରନ୍ଥ ସେମାନଙ୍କର କଣ୍ଠରେ ଥାଏ ମାତ୍ର ସେମାନଙ୍କ ମଧ୍ୟରୁ ଅନେକ ଖାଲି ଭୋଗ ବିଳାସରେ ଡୁବି ରହିଥାନ୍ତି । କିନ୍ତୁ ଜ୍ଞାନ ଖାଲି ଶୁଖିଲା କଥା ନୁହେଁ । ଏଥିପାଇଁ ଗୀତାକାର ଜ୍ଞାନ ସହିତ ଭକ୍ତିକୁ ମିଶ୍ରିତ କରି ଏହି ଭକ୍ତି ମିଶ୍ରିତ ଜ୍ଞାନକୁ ପ୍ରଥମ ସ୍ଥାନ ଦେଇଛନ୍ତି । ଭକ୍ତିଶୂନ୍ୟ ଜ୍ଞାନ କିଛି ନୁହେଁ । ସେଥିପାଇଁ କହିଛନ୍ତି "ଭକ୍ତିକଲେ ଜ୍ଞାନ ଆପେ ଆସିଯିବ ।" କିନ୍ତୁ ଭକ୍ତି ସହଜ କଥା

ନୁହେଁ । ଭକ୍ତର ଅର୍ଥ ମୁଣ୍ଡକୁ ପାଣି ଛଡ଼ାଇବା ସଙ୍ଗେ ସମାନ । ଏଥିପାଇଁ ଗୀତାକାର ଭକ୍ତର ଲକ୍ଷଣକୁ ସ୍ଥିତ ପ୍ରଜ୍ଞର ଲକ୍ଷଣ ସଙ୍ଗେ ସମାନ କରି ବର୍ଣ୍ଣନା କରିଛନ୍ତି ।

ଅତଏବ ଗୀତା କଥିତ ଭକ୍ତି ବୋକାପଣିଆ ନୁହେଁ କିମ୍ବା ତାହା ମଧ୍ୟ ଅନ୍ଧ ଶ୍ରଦ୍ଧା ନୁହେଁ । ଗୀତା ଯାହା କହୁଛି ଏବଂ ଲୋକେ ଯାହା କରୁଛନ୍ତି ଏହି ଉଭୟ ମଧ୍ୟରେ ଅତି ଅଳ୍ପ ମେଳ ଥାଏ । ଗୀତାରେ କୁହାଯାଇଥିବା ଉପଗ୍ରହର ବାହାରେ ଦେଖାଇବା କ୍ରିୟା ସହିତ ଅତିଅଳ୍ପ ସମ୍ପର୍କ ଥାଏ । ମାଳା, ତିଳକ, ଅର୍ଘ୍ୟ ଆଦି କେହି ଭକ୍ତ ବ୍ୟବହାର କରିପାରନ୍ତି ମାତ୍ର ସେସବୁ ଭକ୍ତର ଚିହ୍ନ ନୁହେଁ । ଯେ କାହାରି ଦ୍ୱେଷ କରେ ନାହିଁ, ଯେ ଦୟାର ଭଣ୍ଡାର, ଯାହାର କିଛିମାତ୍ର ଅସକ୍ତି ନାହିଁ ଯାହାର ଅହଂକାର ନାହିଁ, ସୁଖ ଦୁଃଖ, ଶୀତ ଉଷ୍ଣ ଯାହାକୁ ସମାନ ବୋଧହୁଏ, ଯେ କ୍ଷମାଶୀଳ, ଯେ ସଦା ସନ୍ତୁଷ୍ଟ ଯାହାଙ୍କର ସଂକଳ୍ପ କେବେ ଅନ୍ୟଥା ହୁଏ ନାହିଁ, ଯେ ମନ ଓ ବୁଦ୍ଧିକୁ ଈଶ୍ୱରଙ୍କଠାରେ ଅର୍ପଣ କରିଦେଇଛନ୍ତି, ଯାହାକୁ ଲୋକେ ଡରନ୍ତି ନାହିଁ କିମ୍ବା ଯେ ମଧ୍ୟ ଲୋକଙ୍କୁ ଡରନ୍ତି ନାହିଁ, ଯେ ହର୍ଷ, ଶୋକ, ଭୟରୁ ମୁକ୍ତ, ଯେ ପବିତ୍ର, ଯେ ଅତ୍ୟନ୍ତ କାର୍ଯ୍ୟଦକ୍ଷ ହେଲେ ମଧ୍ୟ ସବୁବେଳେ ତଟସ୍ଥ, ଯେ ଶୁଭ ଓ ଅଶୁଭକୁ ତ୍ୟାଗ କରିଛନ୍ତି, ଯେ ଶତ୍ରୁ ମିତ୍ର ଉଭୟଙ୍କ ପ୍ରତି ସମାନ, ଯାହାଙ୍କୁ ମାନ ଅପମାନ ସବୁ ସମାନ, ଯେ ପ୍ରଶଂସା ଶୁଣି ଫୁଲି ଉଠନ୍ତି ନାହିଁ କିମ୍ବା ନିନ୍ଦା ଶୁଣି ଦବି ଯାନ୍ତି ନାହିଁ, ଯେ ମୌନୀ, ଯାହାଙ୍କୁ ଏକାନ୍ତ ସ୍ଥାନ ଭଲଲାଗେ, ଯାହାଙ୍କର ବୁଦ୍ଧି ସ୍ଥିର, ସେହି ଏକା ଭକ୍ତ ବୋଲନ୍ତି । ଏଭଳି ଭକ୍ତ ଅସକ୍ତ ସ୍ତ୍ରୀ ପୁରୁଷଙ୍କ ପକ୍ଷରେ ସମ୍ଭବପର ନୁହେଁ ।

ଏଥିରୁ ଅମ୍ଭେମାନେ ବୁଝିପାରିବା ଯେ ଜ୍ଞାନ ଲାଭ କରିବା ଅଭି- ଭକ୍ତହେବାର ଅର୍ଥ ଆତ୍ମଦର୍ଶନ । ଆତ୍ମଦର୍ଶନ ଏହାଠାରୁ ଅନ୍ୟ କିଛି

ଭଲ ବସ୍ତୁ ନୁହେଁ । ଯେପରି ଝଙ୍କାଟିଏ ଦେଇ ଲୋକ ବିଷ ଅବା ଅମୃତ ଯାହା କିଛି ଆଣିପାରିବ ସେପରି ଭକ୍ତି ଓ ଜ୍ଞାନ ଦେଇ, ବନ୍ଧନ ଓ ମୁକ୍ତିରୁ ମନଇଚ୍ଛା ଗୋଟିକୁ ଆଣିପାରିବ ନାହିଁ । କାରଣ ଏଠାରେ ସାଧନ ଓ ସାଧ୍ୟବସ୍ତୁ ସଂପୂର୍ଣ୍ଣ ରୂପେ ଏକ ନ ହେଲେ ମଧ୍ୟ ଅନେକ ପରିମାଣରେ ଏକାପରି ଅଟେ । ସାଧନର ପରାକାଷ୍ଠା ଅର୍ଥାତ୍ ଅନ୍ତିମ ସୋପାନ "ମୋକ୍ଷ" ଗୀତାରେ ମୋକ୍ଷର ଅର୍ଥ ପରମ ଶାନ୍ତି ।

କିନ୍ତୁ ଏହି ଜ୍ଞାନ ଓ ଭକ୍ତିକୁ ବର୍ତ୍ତମାନ କର୍ମଫଳତ୍ୟାଗ ରୂପକ କଷଟିରେ ପରୀକ୍ଷା କରିବାକୁ ବାକି ରହିଲା । ଲୌକିକ ଦୃଷ୍ଟିରେ ଶୁଷ୍କ ପଣ୍ଡିତକୁ ଜ୍ଞାନୀ ବୋଲି କୁହାଯାଏ । ତାହାଙ୍କୁ କିଛି କାମ କରିବାକୁ ହୁଏ ନାହିଁ । ଅର୍ଥାତ୍ ସେ କିଛି କରନ୍ତି ନାହିଁ । ହାତର ଢାଳଖଣ୍ଡି ଉଠାଇବାକୁ ହେଲେ କର୍ମର ବନ୍ଧନରେ ପଡ଼ିବେ ବୋଲି ସେମାନେ ବିଚାରନ୍ତି । ଯଜ୍ଞଶୂନ୍ୟ ବ୍ୟକ୍ତି ଯେଉଁଠାରେ ଜ୍ଞାନୀରୂପେ ବିବେଚିତ ସେଠାରେ ଢାଳ ଖଣ୍ଡିଏ ହାତରେ ଧରିବା ଭଳି ଅତି ସାମାନ୍ୟ ଲୌକିକ କ୍ରିୟାର ସ୍ଥାନ ରହିବ ଅଉ କେଉଁଠାରେ ?

ଲୌକିକ କଳ୍ପନାରେ ଭକ୍ତ କହିଲେ ଚୋବା ଓ ମାଳାଧରି ଜପ କରିବା ଲୋକ । ସେବା କାମକଲେ ମଧ୍ୟ ମାଳାଗଡ଼ା ବନ୍ଦ ହେଲା ବୋଲି ତାଙ୍କ ମନରେ ଦୁଃଖ ହୁଏ । କେବଳ ଖାଇବା ପିଇବା ପ୍ରଭୃତି ସୁଖଭୋଗ କଲା ବେଳକୁ ମାଳାଟିକୁ ହାତରୁ ବାହାର କରି ରଖନ୍ତି, କିନ୍ତୁ ରୋଗୀସେବା କିମ୍ବା ଅନ୍ୟକିଛି ଦରକାରୀ କାମ ବେଳକୁ ମାଳା ଛାଡ଼ିବା ପାଇଁ ସବୁ ଆପତ୍ତି ବାହାରେ ।

ଏହି ଦୁଇପ୍ରକାର ଲୋକଙ୍କ ବିଷୟରେ ଗୀତା ସ୍ପଷ୍ଟ କହେ ଯେ, "କର୍ମବିନା କେହି ସିଦ୍ଧି ପାଇ ନ ପାରେ, ଜନକ ପ୍ରଭୃତି କେବଳ

କର୍ମକର ଜ୍ଞାନ ଲାଭ କରିଥିଲେ । ମୁଁ ଯଦି ଆଳସ୍ୟ ଛାଡ଼ି କର୍ମ ନ କରନ୍ତି, ତେବେ ଏହି ଜଗତ ନଷ୍ଟ ହୋଇଯିବ ।" ଭଗବାନଙ୍କୁ ଯଦି ଏପରି କାମ କରିବାକୁ ହୁଏ ତାହାହେଲେ ସାଧାରଣ ଲୋକଙ୍କ କଥା ଆଉ କହିବା କଣ ?

ଏକ ହିସାବରେ ଦେଖିଲେ କର୍ମ ମାତ୍ରକେ ବନ୍ଧନ, ଏଥିରେ କୌଣସି ସନ୍ଦେହ ନାହିଁ । ଅନ୍ୟ ହିସାବରେ ଦେଖିବାକୁ ଗଲେ ଲୋକର ଇଚ୍ଛା ଥାଉ ଅବା ନ ଥାଉ କର୍ମ କରିବାକୁ ସେ ବାଧ୍ୟ । ଶାରୀରିକ ଓ ମାନସିକ ସବୁ ପ୍ରକାର ଚେଷ୍ଟା "କର୍ମ" । ତେବେ କର୍ମ କରି ମନୁଷ୍ୟ କିପରି ବନ୍ଧନ ମୁକ୍ତ ହେବ ? ମୋ ଜାଣିବାରେ ଗୀତା ଏହି ମର୍ମ ଗଣ୍ଠିକୁ ଯେପରି ଖୋଲି ଦେଖାଇଛି ଅନ୍ୟ କୌଣସି ଧର୍ମଗ୍ରନ୍ଥ ତାହା କରି ପାରି ନାହିଁ । ଗୀତା କହୁଛି "ଫଳାସକ୍ତି ଛାଡ଼ି କର୍ମ କର ।" "ଆଶା ନ ରଖି କର୍ମ କର ।" "ନିଷ୍କାମ ଭାବରେ କର୍ମ କର ।" ଗୀତାର ଏହି ବାଣୀ ଭୁଲିଯିବା କଥା ନୁହେଁ । ଯେ କର୍ମକୁ ଛାଡ଼ି ଦେଉଛି ସେ ତଳକୁ ପଡ଼ୁଛି । ଯେ କର୍ମ କରି ତାର ଫଳକୁ ଛାଡ଼ୁଛି ସେ ଉପରକୁ ଉଠୁଛି ।

ଫଳତ୍ୟାଗ କହିଲେ ତ୍ୟାଗୀକୁ ଫଳ ନ ମିଳିବ ଏଥିରୁ ଏଭଳି ଅର୍ଥ କେହି ଯେପରି ନ ବୁଝନ୍ତି । ଏଭଳି ଭାବରେ ଗୀତା କୌଣସିଠାରେ ଅର୍ଥ କରି ନାହିଁ । ଫଳତ୍ୟାଗ କହିଲେ ଫଳ ବିଷୟରେ ଆସକ୍ତିର ଅଭାବକୁ ବୁଝାଏ । ପ୍ରକୃତ କଥା ଦେଖିଲେ ଫଳତ୍ୟାଗ କରିଥିବା ଲୋକ ହଜାର ଗୁଣ ତାହାର କର୍ମର ଫଳ ଭୋଗ କରେ । ଗୀତାରେ ଯେଉଁ ଫଳତ୍ୟାଗ କଥା ଅଛି, ତାହା ହେଉଛି ଅସୀମ ଶ୍ରଦ୍ଧାର ପରୀକ୍ଷା । ଯେ ବ୍ୟକ୍ତି ସବୁବେଳେ ବସି ପରିଣାମ ଚିନ୍ତା କରେ ସେ ଅନେକ ସମୟରେ କର୍ମ ତଥା କର୍ତ୍ତବ୍ୟ—ଭ୍ରଷ୍ଟ ହୁଏ । ତେଣୁ

ସେ ଅଧୀର ହୋଇପଡ଼େ । ଅଧୀର ହେଲେ ତାର ମର୍ମରେ କୋଧ ଆସେ । ପୁଣି ସେ ଅକାର୍ଯ୍ୟ ମଧ୍ୟ କରିବାକୁ ଯାଏ । ଗୋଟାଏ କାର୍ଯ୍ୟ ଛାଡ଼ି ଅନ୍ୟଟାକୁ ହାତଦିଏ । ସେଥି ନ ସରୁଣୁ ଆଉଗୋଟାଏ ଯାଇ ଧରେ । ଖାଲି ପରିଣାମ ଚିନ୍ତା କରୁଥିବା ମନୁଷ୍ୟର ଅବସ୍ଥା ବିଷୟ ବାସନାରେ ଅନ୍ଧ ହୋଇଥିବା ଲୋକର ଅବସ୍ଥାପରି ହୋଇଯାଏ । ଶେଷରେ ବିଷୟାନ୍ଧ ମନୁଷ୍ୟ ପରି, ସେ ଭଲ ମନ୍ଦ, ନୀତି ଅନୀତିର ବିଚାର ଛାଡ଼ି, ଫଳ ପାଇବା ଉଦ୍ଦେଶ୍ୟରେ ଯାହା କିଛି ଉପାୟ ଅବଲମ୍ବନ କରେ କେବଳ ତାହାକୁ ଧର୍ମ ବୋଲି ମନେ କରେ ।

କର୍ମଫଳରେ ଆସକ୍ତ ହୋଇ କର୍ମ କଲେ ପରିଣାମ ଅତି ଭୟଙ୍କର ହୁଏ । ଏହାହିଁ ଦେଖି ଗୀତା ରଚୟିତା ଅନାସକ୍ତ ଅର୍ଥାତ୍ କର୍ମଫଳ ତ୍ୟାଗର ସିଦ୍ଧାନ୍ତ ନିରୂପଣ କରି ଜଗତକୁ ତାହା ଅତିଶୟ ଚିତ୍ତାକର୍ଷକ ଭାଷାରେ ଶୁଣାଇ ଅଛନ୍ତି । ସାଧାରଣ ଲୋକଙ୍କର ବିଶ୍ୱାସ ଏହି ଯେ ଧର୍ମ ଅର୍ଥର ବିରୋଧୀ । ବ୍ୟବସାୟ ବାଣିଜ୍ୟ ଆଦି ସାଂସାରିକ କର୍ମ କ୍ଷେତ୍ରରେ ଧର୍ମପାଳନ କରାଯାଇ ନ ପାରେ । ଏ ସବୁ ସ୍ଥାନରେ ଧର୍ମର ସ୍ଥାନ ନାହିଁ । ମୋକ୍ଷନିମନ୍ତେ କେବଳ ଧର୍ମ ପାଳିବାକୁ ହୁଏ । ଧର୍ମପାଇଁ ଧର୍ମ ଶୋଭାପାଏ, ଅର୍ଥପାଇଁ ଅର୍ଥ । ମୋ ବିଚାରରେ ଗୀତାକାର ଏହି ସଂଶୟ ଦୂରକରି ଅଛନ୍ତି । ସେ ମୋକ୍ଷ ଓ ବ୍ୟବହାର ମଧ୍ୟରେ ଏପରି ଭେଦ ରଖି ନାହାନ୍ତି । ବ୍ୟବହାର ସଙ୍ଗେ ଧର୍ମକୁ ମିଳେଇ ଅଛନ୍ତି । ଯେଉଁ ଧର୍ମକୁ ବ୍ୟବହାରରେ ପାଳନ କରାଯାଇ ନ ପାରେ, ସେହି ଧର୍ମ ଧର୍ମନୁହେଁ, ଏପରି ସୂଚନା ବି ଗୀତାରେ ରହିଅଛି ବୋଲି ମୋର ବିଶ୍ୱାସ । ଗୀତାର ଅଭିପ୍ରାୟରୁ ଜଣାଯାଏ ଯେ ଆସକ୍ତି ବିନା ଯେଉଁସବୁ କାର୍ଯ୍ୟ କରାଯାଇ ନ ପାରେ ସେ ସବୁ ତ୍ୟାଜ୍ୟ । ଏହି

ସୁବର୍ଣ୍ଣ ନିୟମ ମନୁଷ୍ୟକୁ ଅନେକ ସମୟରେ ଧର୍ମସଙ୍କଟରୁ ରକ୍ଷା କରେ ।; ଏହି କାରଣରୁ ମିଥ୍ୟା କହିବା, ହତ୍ୟାକରିବା, ବ୍ୟଭିଚାର କରିବା ଇତ୍ୟାଦି କର୍ମ ସହଜରେ ନିଷିଦ୍ଧ କର୍ମରୂପେ ପ୍ରମାଣିତ ହୋଇ ଯାଏ ମନୁଷ୍ୟଜୀବନ ସରଳ ହୋଇଥାଏ ଏବଂ ଏହି ସରଳତାରୁ ଶାନ୍ତି ମିଳେ । ଫଳତ୍ୟାଗ କହିଲେ, ପରିଣାମ ଅନାବଶ୍ୟକ ଏ ଭଳି ଅର୍ଥ ତହିଁରୁ ବାହାରୁ ନାହିଁ । କର୍ମର ପରିଣାମ, କର୍ମସାଧନର ପନ୍ଥା, ଏବଂ ତାହାର ଜ୍ଞାନ, ଅତି ଆବଶ୍ୟକ । ଏତକ ଜାଣି ନେଲା ପରେ, ଯେ ମନୁଷ୍ୟ ପରିଣାମ ପ୍ରତି ଦୃଷ୍ଟି ନ ରଖି କେବଳ କର୍ମସାଧନାରେ ତନ୍ମୟ ରହେ ତାହାକୁ ଫଳତ୍ୟାଗୀ କହନ୍ତି । ଏହି ଦୃଷ୍ଟିରେ ବିଚାରକରିବାରୁ ମୋତେ ଜଣା ଯାଉଛି କି ଗୀତାର ଉପଦେଶଅନୁସାରେ ଜୀବନ ଗଢିବାକୁ ଯେଉଁମାନେ ଇଚ୍ଛାକରନ୍ତି, ସେମାନଙ୍କୁ ସତ୍ୟ ଓ ଅହିଂସାକୁ ପାଳନ-କରିବାକୁ ହେବ । ଫଳ ପ୍ରତି ଆସକ୍ତି ନ ରହିଲେ ଅସତ୍ୟ କହିବା; କିମ୍ବା ହିଂସା କରିବାପାଇଁ ମନୁଷ୍ୟର ଅନ୍ୟକୌଣସି ପ୍ରଲୋଭନ ରହେ ନାହିଁ । ଯେ କୌଣସି ଅସତ୍ୟ ଅଥବା ହିଂସାର କାର୍ଯ୍ୟକୁ ପରୀକ୍ଷା କରି ଦେଖିଲେ ଜଣାଯାଏ ଏହାର ମୂଳରେ ମନୁଷ୍ୟର ଲୋଭ ଅର୍ଥାତ୍ ଫଳ ପାଇବାର ଇଚ୍ଛା ରହିଅଛି । କିନ୍ତୁ ଅହିଂସା ଗୀତାର ବିଷୟ ନୁହେଁ । ଗୀତା ଯୁଗର-ପୂର୍ବରୁ ଅହିଂସାକୁ ପରମଧର୍ମରୂପେ ଲୋକେ ମାନୁଥିଲେ । ଅନାସକ୍ତି ସିଦ୍ଧାନ୍ତ ପ୍ରମାଣ କରିବାକୁ ଗୀତାର ଉତ୍ପତ୍ତି । ଦ୍ୱିତୀୟ ଅଧ୍ୟାୟ ଏହି କଥାକୁ ସ୍ପଷ୍ଟରୂପେ ପ୍ରମାଣ କରେ ।

•

ଗୀତା ଯଦି ଅହିଂସାକୁ ସ୍ୱୀକାର କରେ ଅର୍ଥାତ୍ ଅନାସକ୍ତିସିଦ୍ଧାନ୍ତରେ ଅହିଂସାଧର୍ମ ଯଦି ସ୍ୱତଃ ସମାବେଶ ହୋଇଯାଏ ତାହାହେଲେ ଗୀତାକାର ଏକ ଭୌତିକ ଯୁଦ୍ଧକୁ ଉଦାହରଣସ୍ୱରୂପ ଉଲ୍ଲେଖ କରିବାର କାରଣ କଣ ? ଗୀତା ଯୁଗରେ ଅହିଂସାଧର୍ମ ସର୍ବମାନ୍ୟ ଥିଲେ ମଧ୍ୟ, ସେ ସମୟରେ

ତୁର୍ଭୀତକ ଯୁଦ୍ଧ ଅତି ସାଧାରଣ କଥାପରି ପ୍ରଚଳିତ ଥିବା ସ୍ଥଳେ, ଏପରି ଏକ ଯୁଦ୍ଧକୁ ଉଦାହରଣସ୍ୱରୂପ ଉଲ୍ଲେଖ କରିବାରେ ଗୀତାକାର କିଛି ସଂକୋଚ ବୋଧ କରି ନାହାନ୍ତି କିମ୍ବା ବୋଧ କରିବା ମଧ୍ୟ ଉଚିତ ନୁହେଁ ।

ଅତଏବ ଫଳତ୍ୟାଗ ମହତ୍ତ୍ୱର ମାପ ନିରୂପଣକଲାବେଳେ ଗୀତାକାରଙ୍କ ମନରେ କି ବିଚାର ଥିଲା, ସେ ଅହିଂସାର ମର୍ଯ୍ୟାଦା କେତେଦୂର ନିର୍ଦ୍ଧାରଣ କରିଛନ୍ତି ଏ ସବୁ ବିଷୟ ଆମ୍ଭର ବିଚାର କରିବାର ଆବଶ୍ୟକ ନାହିଁ । କବି ମହତ୍ତ୍ୱପୂର୍ଣ୍ଣ ସିଦ୍ଧାନ୍ତକୁ ଜଗତ ସମ୍ମୁଖରେ ସ୍ଥାପନ କରିଛନ୍ତି । ଏଥିପାଇଁ ଆମ୍ଭର ବୁଝିବା ଉଚିତ ନୁହେଁ ଯେ ସେ ସବୁବେଳେ ତାଙ୍କ ସିଦ୍ଧାନ୍ତର ମହତ୍ତ୍ୱକୁ ସମ୍ପୂର୍ଣ୍ଣରୂପେ ଉପଲବ୍ଧି କରି ପାରିଥିଲେ । ଅଥବା ଉପଲବ୍ଧି କରିଥିଲେ ମଧ୍ୟ ସେ ତାଙ୍କର ସେହି ଉପଲବ୍ଧିକୁ ଯଥାର୍ଥଭାଷାରେ ବ୍ୟକ୍ତ କରି ପାରିଛନ୍ତି ଏହା ବୁଝାଯାଇ ନ ପାରେ । ଏଥିରେ କାବ୍ୟ ଓ କବିଙ୍କର ମହିମା ଫୁଟି ଉଠିଛି । କବିଙ୍କର ଅର୍ଥ ଅନନ୍ତ । ମନୁଷ୍ୟପରି ମହାବାକ୍ୟ ସମୂହର ବିକାଶ କ୍ରମଶଃ ହେଉଅଛି । ଭାଷାର ଇତିହାସ ଅନୁସନ୍ଧାନ କଲେ ଜଣାଯାଏ ଯେ ଅନେକ ମହା ମହା ଶବ୍ଦର ଅର୍ଥ ନିତ୍ୟ ନୂତନ ହେଉଅଛି । ଗୀତାର ଅର୍ଥ ବିଷୟରେ ମଧ୍ୟ ଠିକ୍ ଏହି ଅବସ୍ଥା । ଗୀତାକାର ମଧ୍ୟ ନିଜେ ମହାନ୍ ରୂଢ଼ ଶବ୍ଦର ଅର୍ଥକୁ ବ୍ୟାପକ କରିଅଛନ୍ତି । ଗୀତାକୁ ଦେଖିଲାମାତ୍ରକେ ଏହିକଥା ବେଶ୍ ବୁଝାଯାଏ । ଗୀତାଯୁଗ ପୂର୍ବେ ଯଜ୍ଞକାର୍ଯ୍ୟରେ ପଶୁବଳି ଦେବାର ବିଧି ଥାଇ ପାରେ । କିନ୍ତୁ ଗୀତାର ଯଜ୍ଞରେ ଏହାର ଗନ୍ଧମାତ୍ର ନାହିଁ । ଗୀତାରେ ଜପ ଯଜ୍ଞ "ଯଜ୍ଞରାଜ" ବୋଲି କଥିତ । ତୃତୀୟ ଅଧ୍ୟାୟରୁ ଜଣାଯାଏ ଯେ ଯଜ୍ଞ କହିଲେ ପରୋପକାର ନିମିତ୍ତ ନିଜ ଶରୀରକୁ ଅର୍ପଣ କରିବା । ତୃତୀୟ ଓ ଚତୁର୍ଥ ଅଧ୍ୟାୟକୁ ମିଳାଇ ତହିଁରୁ ଅନ୍ୟ ଅର୍ଥ ବାହାର କରାଯାଇ ପାରେ । କିନ୍ତୁ ଜୀବହିଂସା କଦା ତହିଁରୁ ଅର୍ଥୌ

ବାହାରିବ ନାହିଁ । ଗୀତା କଥିତ ସନ୍ନ୍ୟାସର ଅର୍ଥ ଏ ଭଳି ନିଷ୍ଟିତ । କର୍ମ ମାନଙ୍କ ତ୍ୟାଗ କରିବାକୁ ଗୀତା ସନ୍ନ୍ୟାସ ବୋଲି କହେ ନାହିଁ । ଗୀତାର ସନ୍ନ୍ୟାସୀ ଅତି କର୍ମୀ ହେଲେ ମଧ୍ୟ ପୁଣି ସେ ଅତି ଅକର୍ମା । ଏହିପରିଭାବରେ ଗୀତାକାର ମହାନ ଶବ୍ଦମାନଙ୍କର ବ୍ୟାପକ ଅର୍ଥକରି ଆମ୍ଭମାନଙ୍କଭାଷାକୁ ବ୍ୟାପକ ଅର୍ଥ କରିବାକୁ ଆମ୍ଭମାନଙ୍କୁ ଶିକ୍ଷା ଦେଇଛନ୍ତି । ସଂମ୍ପୂର୍ଣ୍ଣରୂପେ କର୍ମଫଳ ତ୍ୟାଗ କରି ଭୌତିକ ଯୁଦ୍ଧ କରାଯାଇ ପାରେ । ଗୀତା ରଚୟିତାଙ୍କର ଭାଷାରୁ ଏପରି ଆକ୍ଷରିକ ଅର୍ଥ ବାହାରିବା ଅସମ୍ଭବ ନୁହେଁ । ମାତ୍ର ଗୀତାର ଶିକ୍ଷାକୁ ଜୀବନରେ ପୂର୍ଣ୍ଣରୂପେ ପ୍ରତିପାଳନ କରିବାକୁ ଯାଇ ଗତ ଚାଳିଶବର୍ଷର ଅବିରତ ସାଧନା ଫଳରେ ମୋତେ ସରଳଭାବରେ ବୁଝା ପଡୁଛି ଯେ ସତ୍ୟ ଓ ଅହିଂସାକୁ ଛାଡ଼ି ସମ୍ପୂର୍ଣ୍ଣରୂପେ କର୍ମଫଳ ତ୍ୟାଗ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ ।

ଗୀତା ସୂତ୍ରଗ୍ରନ୍ଥ ନୁହେଁ । ଏହା ଗୋଟିଏ ବୃହତ ଧର୍ମ କାବ୍ୟ । ଏହା ଭିତରକୁ ଯେତେ ଗମ୍ଭୀରଭାବରେ ପ୍ରବେଶ କରିବ ତହିଁରୁ ସେତେ ନୂଆ ନୂଆ ଓ ଅତି ସୁନ୍ଦର ଅର୍ଥ ପାଇ ପାରିବ । ଗୀତା ସର୍ବସାଧାରଣଙ୍କ ନିମିତ୍ତ ରଚିତ, ତେଣୁ ତହିଁରେ ଗୋଟିଏ କଥାକୁ ନାନା ଭାବରେ ବାଖ୍ୟା କରାଯାଇ ଅଛି । ସୁତରାଂ ଗୀତାରେ ଯେଉଁସବୁ ମହାନ୍ ଶବ୍ଦ ପ୍ରୟୋଗ କରାଯାଇ ଅଛି ତାହାର ଅର୍ଥ ଯୁଗେ ଯୁଗେ ବଦଳିବ ଓ ବ୍ୟାପକ ମଧ୍ୟ ହେବ । ମାତ୍ର ଗୀତାର ମୂଳମନ୍ତ୍ର କଦାପି ବଦଳିବ ନାହିଁ । ଏହି ମନ୍ତ୍ରକୁ ଯେପରି ସାଧନ କରିପାରିବ ଜିଜ୍ଞାସୁ ତହିଁରୁ ସେହିପରି ଅର୍ଥ ବାହାର କରି ପାରିବ ।

ଗୀତା ବିଧି ନିଷେଧ କଥା କହେ ନାହିଁ । କାରଣ କେଉଁକପକ୍ଷରେ ଯାହା ବିହିତ ହୋଇପାରେ ଅପର ପକ୍ଷରେ ତାହା ନିଷିଦ୍ଧ ହୋଇ ପାରେ । ଏକସମୟରେ ଯାହା ଗୋଟିଏ ଦେଶରେ ବିହିତ ବୋଲି

ବିବେଚିତ ହୁଏ ଅନ୍ୟସମୟରେ ଅନ୍ୟ ଦେଶରେ ସେହି କଥା ପୁଣି ଅବିହିତ ବୋଲି ବିବେଚିତ ହୋଇପାରେ । ସୁତରାଂ ନିଷିଦ୍ଧ ଅର୍ଥରେ ଅବିହିତ କର୍ମ ଅର୍ଥ ଫଳାସକ୍ତି, ବିହିତ ଅର୍ଥ ଅନାସକ୍ତି ।

ଗୀତାରେ ଜ୍ଞାନର ମହିମା ପ୍ରକାଶ କରାଯାଇଅଛି, ତଥାପି ତାହା ବୁଦ୍ଧିଗମ୍ୟ ନୁହେ । ତାହା ହୃଦୟଗମ୍ୟ ଅଟେ । ଶ୍ରଦ୍ଧାହୀନ ଲୋକ ଗୀତା ବୁଝିପାରେ ନାହିଁ । ସୁତରାଂ ତା'ପାଇଁ ଗୀତାଶାସ୍ତ୍ର ନୁହେଁ ବୋଲି ଗୀତାକାର କହିଛନ୍ତି ।

"ଯେ ତପସ୍ୱୀ ନୁହେଁ, ଯେ ଭକ୍ତ ନୁହେଁ, ଯେ ଶୁଣିବାକୁ ଇଚ୍ଛାକରେ ନାହିଁ, ଯେ ମୋର ଦ୍ୱେଷ ଅର୍ଥାତ ନିନ୍ଦାକରେ, ସେପରି ଲୋକକୁ ତୁମେ ଏହି ଜ୍ଞାନ କେବେ କହିବ ନାହିଁ ।" (୧୮ । ୬୭)

"କିନ୍ତୁ ଏହି ଗୁହ୍ୟ ଜ୍ଞାନ ଯେ ମୋର ଭକ୍ତମାନଙ୍କୁ ଶୁଣାଇବ, ମୋଠାରେ ଏ ରୂପ ପରମ ଭକ୍ତି କରିବା ଦ୍ୱାରା ସେ ମୋତେହିଁ ପାଇବ ।" (୧୮ । ୬୮)

"ଯେ ମନୁଷ୍ୟ ଦ୍ୱେଷ ରହିତ ହୋଇ ଶ୍ରଦ୍ଧାପୂର୍ବକ ଏହାକୁ ଶୁଣନ୍ତି ସେ ମୁକ୍ତ ହୋଇଯାନ୍ତି ଏବଂ ପୁଣ୍ୟକର୍ମୀମାନଙ୍କ ପରି ଶୁଭଲୋକରେ ବସନ୍ତି ।" (୧୮ । ୭୧)

କୌଶାନୀ ( ହିମାଳୟ )
ସୋମବାର
ଜ୍ୟେଷ୍ଠବଦୀ ୨, ୧୯୮୬,
ତା°୨୪ । ୬ । ୨୯,

ମୋହନଦାସ କର୍ମଚନ୍ଦ ଗାନ୍ଧି ।

ହଜାରିବାଗ ଜେଲ
୧୨ । ୮ । ୩୦

ଅନୁବାଦକ,
ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର,

# ଅନାସକ୍ତିଯୋଗ

## ଅର୍ଜ୍ଜୁନ-ବିଷାଦ ଯୋଗ

ଜିଜ୍ଞାସା ବିନା ଜ୍ଞାନ ନାହିଁ, ଦୁଃଖ ବିନା ସୁଖ ନାହିଁ । ଧର୍ମସଙ୍କଟ ହୃଦୟ ମନ୍ଥନ ସମସ୍ତ ଜିଜ୍ଞାସୁ ବ୍ୟକ୍ତିଙ୍କର ଥରେ ମାତ୍ର ଉପସ୍ଥିତ ହୁଏ ।

ଧୃତରାଷ୍ଟ୍ର କହିଲେ :—ହେ ସଞ୍ଜୟ, ଦୁର୍ଯ୍ୟୋଧନ ପ୍ରଭୃତି ମୋର ପୁତ୍ରମାନେ ଏବଂ ପାଣ୍ଡବମାନେ ଯୁଦ୍ଧ କରିବା ଇଚ୍ଛାରେ ଧର୍ମଭୂମି କୁରୁକ୍ଷେତ୍ରରେ ଏକତ୍ର ହୋଇ କ'ଣ କଲେ ମୋତେ ଶୁଣାଅ । ୧ ।

ଟିପ୍ପଣୀ—ଏହି ଶରୀର ଏକ ଧର୍ମକ୍ଷେତ୍ର, କାରଣ ଏହା ମୋକ୍ଷ ପ୍ରାପ୍ତିର ଦ୍ୱାର ସ୍ୱରୂପ ଅଟେ । ପାପରୁ ଏହାର ଉତ୍ପତ୍ତି ଏବଂ ଏହା ମଧ୍ୟ ପାପର ପାତ୍ର ହୋଇ ରହିଅଛି, ତେଣୁ ଏହାର ନାମ କୁରୁକ୍ଷେତ୍ର ଅଟେ ।

'କୌରବ' ଅର୍ଥ "ଆସୁରୀବୃତ୍ତି" 'ପାଣ୍ଡବ' ଅର୍ଥ "ଦୈବୀବୃତ୍ତି" ପ୍ରତ୍ୟେକ ଶରୀର ଭିତରେ ସତ୍ ଓ ଅସତ୍ ବୃତ୍ତିମାନଙ୍କ ମଧ୍ୟରେ ନିରନ୍ତର ଯୁଦ୍ଧ ଲାଗିଅଛି, ଏହା କିଏ ଅନୁଭବ ନ କରୁଛି ?

ସଞ୍ଜୟ କହିଲେ—ରାଜା ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ସୈନ୍ୟଙ୍କୁ ସଜ୍ଜିତ ହୋଇଥିବାର ଦେଖି ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ କହିଲେ ।୨।

ହେ ଆଚାର୍ଯ୍ୟ, ଆପଣଙ୍କର ବୁଦ୍ଧିମାନ ଶିଷ୍ୟ ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନ ପାଣ୍ଡବଙ୍କର ବିପୁଳ ସେନାକୁ ବ୍ୟୂହାକାରରେ କିପରି ସୁସଜ୍ଜିତ କରିଛନ୍ତି ଦେଖନ୍ତୁ । ୩ ।

ଏହି ପାଣ୍ଡବ ସେନା ମଧ୍ୟରେ ଭୀମ ଅର୍ଜୁନଙ୍କ ପରି ମହାଧନୁର୍ଦ୍ଧର, ବୀର ସାତ୍ୟକି, ବିରାଟ ଏବଂ ମହାରଥ ଦ୍ରୁପଦ ପ୍ରଭୃତି ଅଛନ୍ତି । ୪ ।

ଧୃଷ୍ଟକେତୁ, ଚେକିତାନ, କାଶୀରାଜ, ପୁରୁଜିତ୍, କୁନ୍ତିଭୋଜ ନରଶ୍ରେଷ୍ଠ ଶୈବ୍ୟ ଅଛନ୍ତି । ୫ ।

ମହା ପରାକ୍ରମ ଯୁଧାମନ୍ୟୁ, ଶକ୍ତିମାନ ଉତ୍ତମୌଜା, ସୁଭଦ୍ରାନନ୍ଦନ ଅଭିମନ୍ୟୁ, ଏବଂ ଦ୍ରୌପଦୀଙ୍କର ପୁତ୍ରମାନେ, ଏମାନେ ସମସ୍ତେ ମହା ଧନୁର୍ଦ୍ଧର ଅଟନ୍ତି । ୬ ।

ହେ ବ୍ରାହ୍ମଣଶ୍ରେଷ୍ଠ, ବର୍ତ୍ତମାନ ଆମ୍ଭର ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ଆପଣ ଚିହ୍ନନ୍ତୁ । ସେମାନଙ୍କର ପରିଚୟ ଦେବା ନିମିତ୍ତ ମୁଁ ଆପଣଙ୍କୁ ଆମ୍ଭର ମୁଖ୍ୟ ମୁଖ୍ୟ ସେନାପତିମାନଙ୍କର ନାମ କହୁଅଛି । ୭ ।

ଆପଣ, ଭୀଷ୍ମ, କର୍ଣ୍ଣ ସମରବିଜୟୀ କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ବିକର୍ଣ୍ଣ, ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ଏବଂ ଜୟଦ୍ରଥ ପ୍ରଭୃତି ଅଛନ୍ତି । ୮ ।

ଏମାନଙ୍କ ଛଡ଼ା ଅନ୍ୟ ଅନେକ ଯୋଦ୍ଧା ଅଛନ୍ତି, ଯେଉଁମାନେ ନାନାପ୍ରକାର ଅସ୍ତ୍ର ଶସ୍ତ୍ର ଚଳାଇବାରେ ବଡ଼ ନିପୁଣ ଏବଂ ମୋ ସକାଶେ ପ୍ରାଣ ଦେବାକୁ ମଧ୍ୟ ପ୍ରସ୍ତୁତ । ସେମାନେ ସମସ୍ତେ ଯୁଦ୍ଧ ବିଦ୍ୟାରେ ପ୍ରବୀଣ ଅଟନ୍ତି । ୯ ।

ଭୀଷ୍ମଙ୍କ ଦ୍ୱାରା ରକ୍ଷିତ ଆମ୍ଭର ସେନାବଳ ବିପକ୍ଷ ସୈନ୍ୟବଳ ସହିତ ଯୁଦ୍ଧ କରିବାକୁ ଅସମର୍ଥ, କିନ୍ତୁ ଭୀମଙ୍କ ଦ୍ୱାରା ରକ୍ଷିତ ତାଙ୍କର ସେନାବଳ ସମର୍ଥ ଅଟନ୍ତି । ୧୦ ।

ସେ ଯାହାହେଉ ଆପଣମାନେ ନିଜ ନିଜ ସ୍ଥାନରେ ରହି ସବୁଆଡ଼ୁ ପିତାମହଙ୍କୁ ରକ୍ଷା କରିବାକୁ ଯତ୍ନବାନ ହୁଅନ୍ତୁ । ୧୧ ।

( ଦୁର୍ଯ୍ୟୋଧନ ଏହିପରି କହିଲେ )

ରାଜା ଦୁର୍ଯ୍ୟୋଧନଙ୍କର ଆନନ୍ଦ ବୃଦ୍ଧି ପାଇଁ ପ୍ରତାପଶାଳୀ କୁରୁକୁଳବୃଦ୍ଧ-ପିତାମହ ଭୀଷ୍ମ ଗମ୍ଭୀର ସିଂହନାଦରେ ଶଙ୍ଖ ବଜାଇଲେ । ୧୨ ।

ପିତାମହ ଭୀଷ୍ମଙ୍କର ଶଙ୍ଖ ଶବ୍ଦ ଶୁଣି ହଠାତ୍ ଶଙ୍ଖ ଭେରୀ ମୃଦଙ୍ଗ ନାଗରା ଓ ଶିଙ୍ଗା ବାଜି ଉଠିଲା ଏବଂ ଅତି ଭୟଙ୍କର ଶବ୍ଦ ଶୁଣାଗଲା । ୧୩ ।

ଏହାପରେ ( କୌରବ ସେନାଙ୍କର ବାଦ୍ୟନାଦ ପରେ ) ଶ୍ରୀକୃଷ୍ଣ ଓ ଅର୍ଜୁନ ଶ୍ୱେତାଶ୍ୱଯୁକ୍ତ ମହାରଥରେ ବସି ଅପୂର୍ବ ଶଙ୍ଖ ବଜାଇଲେ । ୧୪ ।

ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ଶଙ୍ଖ, ଅର୍ଜୁନ ଦେବଦତ୍ତ ଶଙ୍ଖ, ଭୀମକର୍ମା ଭୀମସେନ ପୌଣ୍ଡ୍ର ନାମକ ମହାଶଙ୍ଖ ବଜାଇଲେ । ୧୫ ।

କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର 'ଅନନ୍ତ ବିଜୟ' ନାମକ ଶଙ୍ଖ, ନକୁଳ 'ସୁଘୋଷ' ନାମକ ଶଙ୍ଖ ଓ ସହଦେବ ମଣିପୁଷ୍ପକ ନାମକ ଶଙ୍ଖ ବଜାଇଲେ । ୧୬ ।

ଶ୍ରେଷ୍ଠ ଧନୁର୍ଦ୍ଧର କାଶୀରାଜ, ମହାରଥ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ ବିରାଟ, ଅଜେୟ ସାତ୍ୟକି, ରାଜା ଦ୍ରୁପଦ, ଦ୍ରୌପଦୀଙ୍କର ପୁତ୍ରମାନେ, ସୁଭଦ୍ରାପୁତ୍ର ମହାବାହୁ ଅଭିମନ୍ୟୁ ଏମାନେ ସମସ୍ତେ ଭିନ୍ନ ଭିନ୍ନ ଶଙ୍ଖ ବଜାଇଲେ ।•୧୭, ୧୮ ।

ଏହି ଶଙ୍ଖ ପ୍ରଭୃତିର ତୁମୁଳ ଧ୍ୱନି ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କରି ଧୃତରାଷ୍ଟ୍ରଙ୍କର ପୁତ୍ରମାନଙ୍କ ହୃଦୟକୁ ବିଦୀର୍ଣ୍ଣ କରିଥିଲା । ୧୯ ।

ହେ ରାଜନ୍, କୌରବପକ୍ଷୀୟ ଲୋକମାନଙ୍କୁ ଶସ୍ତ୍ରସମ୍ପାତ ପ୍ରୟୋଗ କରିବାକୁ ଉଦ୍ୟୋଗୀ ଦେଖି କପିଧ୍ୱଜ ଅର୍ଜୁନ ଧନୁ ଉତ୍ତୋଳନ କରି

ଶ୍ରୀକୃଷ୍ଣଙ୍କୁ କହିଲେ—ହେ ଅଚ୍ୟୁତ, ମୋ ରଥକୁ ଉଭୟ ସେନା ମଧ୍ୟରେ ସ୍ଥାପନ କର । ୨୦ । ୨୧ ।

ଯୁଦ୍ଧାଭିଳାଷୀ ହୋଇ କିଏ ସବୁ ଏଠାରେ ଉପସ୍ଥିତ ହୋଇ ଅଛନ୍ତି କେଉଁମାନଙ୍କ ସହିତ ମୋତେ ଯୁଦ୍ଧ କରିବାକୁ ହେବ; ଦୁର୍ବୁଦ୍ଧି ଦୁର୍ଯୋଧନର କଲ୍ୟାଣ କାମନାରେ ଯୁଦ୍ଧ କରିବାକୁ ଯେଉଁ ଯୋଦ୍ଧାମାନେ ଏଠାକୁ ଆସିଅଛନ୍ତି ସେମାନଙ୍କୁ ମୁଁ ଟିକିଏ ଦେଖେଁ । ୨୨ । ୨୩ ।

ସଞ୍ଜୟ କହିଲେ—ହେ ରାଜନ୍, ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଏପରି କହିବାପରେ ଶ୍ରୀକୃଷ୍ଣ ଉଭୟ ସେନା ମଧ୍ୟରେ, ଭୀଷ୍ମଦ୍ରୋଣ ପ୍ରଭୃତି ରାଜାମାନଙ୍କ ସମ୍ମୁଖରେ ତାଙ୍କର ଉତ୍ତମ ରଥକୁ ସ୍ଥାପନ କରି କହିଲେ—ହେ ପାର୍ଥ, ଯୁଦ୍ଧ ନିମନ୍ତେ ସମ୍ମିଳିତ କୌରବମାନଙ୍କୁ ଦେଖ । ୨୪।୨୫

ଅନନ୍ତର ଅର୍ଜୁନ ସେଠାରେ ସମବେତ ଉଭୟ ପକ୍ଷୀୟ ସୈନ୍ୟମାନଙ୍କ ମଧ୍ୟରେ ପିତୃବ୍ୟ ପିତାମହ ଆଚାର୍ଯ୍ୟ, ମାତୁଳ, ଭ୍ରାତା, ପୁତ୍ର, ପୌତ୍ର, ସଖା, ଶ୍ୱଶୁର ପ୍ରଭୃତି ବନ୍ଧୁ ବାନ୍ଧବ ମାନଙ୍କୁ ସମ୍ମିଳିତ ହୋଇଥିବାର ଦେଖି ଦୟାପରବଶ ହୋଇ ଅତିଶୟ ଦୁଃଖାଭିଭୂତ ଭାବରେ କହିଲେ ।୨୬।୨୭

ଅର୍ଜୁନ କହୁଛନ୍ତି—ହେ କୃଷ୍ଣ, ଏହି ଆତ୍ମୀୟ ସ୍ୱଜନମାନେ ଯୁଦ୍ଧ କରିବା ଇଚ୍ଛାରେ ଏହି ରଣକ୍ଷେତ୍ରରେ ଏକତ୍ର ହେବାର ଦେଖି ମୋର ଦେହ ଶିଥିଳ ହୋଇ ଯାଉଅଛି, ମୁଖ ଶୁଖିଯାଉଅଛି, ଦେହ ଥରି ଉଠୁଅଛି ଏବଂ ଶରୀର ରୋମାଞ୍ଚିତ ହେଉଅଛି । ୨୮।୨୯

ହାତରୁ ଗାଣ୍ଡିବ ଧନୁ ଖସିପଡୁଅଛି, ଶରୀର ଦଗ୍ଧ ହେଲାପରି ବୋଧ ହେଉଅଛି । ମୁଁ ସ୍ଥିରହୋଇ ରହି ପାରୁନାହିଁ, ମୋର ଚିତ୍ତ ଅତି ଚଞ୍ଚଳ ହେଉଅଛି । ୩୦ ।

ହେ କେଶବ, ମୁଁ ତ ପୁଣି ବିପରୀତ ଚିହ୍ନମାନ ଦେଖୁଅଛି । ଯୁଦ୍ଧରେ ସ୍ୱଜନମାନଙ୍କୁ ନିହତ କରି କି କଲ୍ୟାଣ ହେବ, ତାହା ମୁଁ ବୁଝିପାରୁନାହିଁ । ୩୧ ।

ସେମାନଙ୍କୁ ମାରି ଜୟ, ରାଜ୍ୟ କିମ୍ବା ସୁଖ ମୁଁ କିଛି ଚାହେଁ ନାହିଁ । ହେ ଗୋବିନ୍ଦ, ମୋର ରାଜ୍ୟରେ, ସୁଖଭୋଗ କରିବାରେ କିଂବା ଏହି ପ୍ରାଣରେ ମଧ୍ୟ କି ପ୍ରୟୋଜନ ଅଛି ? ୩୨ ।

ଯେଉଁମାନଙ୍କ ପାଇଁ ଏହି ରାଜ୍ୟ, ସୁଖ, ଭୋଗ ଆମ୍ଭେମାନେ ଇଚ୍ଛା କରୁଁ, ସେହି ଗୁରୁ, ପିତୃ, ପୁତ୍ର, ପିତାମହ, ମାତୁଳ, ଶ୍ୱଶୁର, ନାତି ଓ ଶଳାଆଦି ଅନ୍ୟ ବନ୍ଧୁବାନ୍ଧବ ସମସ୍ତେ ଧନଜୀବନର ଆଶା ଛାଡ଼ି ଯୁଦ୍ଧ କରିବା ପାଇଁ ଉପସ୍ଥିତ ହୋଇଛନ୍ତି । ୩୩,୩୪।

ହେ ମଧୁସୂଦନ, ସେମାନେ ମୋତେ ହତ କରନ୍ତୁ, ଅଥବା ମୋତେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏପରି ତିନି ଲୋକର ରାଜପଦ ମିଳୁ ତଥାପି ମୁଁ ସେମାନଙ୍କୁ ହତ୍ୟା କରିବାକୁ ଇଚ୍ଛା କରେନାହିଁ । ସାମାନ୍ୟ ପୃଥିବୀ କଥା କିଏ ପଚାରେ ? ୩୫ ।

ହେ ଜନାର୍ଦ୍ଦନ, ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ବଧ କରି ଆମ୍ଭେମାନେ କି ସୁଖ ପାଇବୁଁ ? ବରଂ ଏହି ଆତତାୟୀମାନଙ୍କୁ ହତ କଲେ ଆମ୍ଭେମାନେ ପାପରେ ଲିପ୍ତ ହେବୁଁ । ୩୬ ।

ଅତଏବ ନିଜର ବାନ୍ଧବ କୌରବମାନଙ୍କୁ ମାରିବା ଆମ୍ଭର ଉଚିତ ନୁହେଁ, କାରଣ ହେ ମାଧବ, ସ୍ୱଜନ ମାନଙ୍କୁ ମାରି ଆମ୍ଭେମାନେ କିପରି ସୁଖ ଅନୁଭବ କରିବୁଁ ? ୩୭ ।

ଲୋଭହେତୁ ଯେଉଁମାନଙ୍କ ଚିତ୍ତ ମଳିନ ହୋଇ ଗଲାଣି, ବଂଶନାଶକଲେ କି ଦୋଷ ହୁଏ, ମିତ୍ରଦ୍ରୋହ କେଡ଼େପାପ, ତାହା

ସେମାନେ ବାଳେ ବୁଝିପାରୁ ନଥିବେ, ତଥାପି ହେ ଜନାର୍ଦ୍ଦନ ! ବଂଶନାଶ ଜନିତ ଦୋଷକୁ ଅମ୍ଭେମାନେ ଜାଣି ଜାଣି ତହିଁରୁ କ୍ଷାନ୍ତ ହେବା ପାଇଁ ବିଚାର କରିବା କଣ ଆମ୍ଭର କର୍ତ୍ତବ୍ୟ ନୁହେଁ ? ୩୮,୩୯ ।

ବଂଶନଷ୍ଟ ହେଲେ ସନାତନ କୁଳଧର୍ମ ନଷ୍ଟ ହୁଏ । ଧର୍ମନଷ୍ଟ ହେଲେ ସମୁଦାୟ ବଂଶକୁ ଅଧର୍ମ ମାଡ଼ିବସେ । ୪୦ ।

ହେ କୃଷ୍ଣ, ଅଧର୍ମ ବଢ଼ିଲେ କୁଳସ୍ତ୍ରୀମାନେ ଭ୍ରଷ୍ଟା ହୋଇଯାନ୍ତି, କୁଳସ୍ତ୍ରୀମାନେ ଦୂଷିତା ହେଲେ ବର୍ଣ୍ଣସଙ୍କର ଜାତ ହୁଅନ୍ତି ।୪୧।

କୁଳରେ ବର୍ଣ୍ଣସଙ୍କର ଜାତହେଲେ, କୁଳନାଶକାରୀ ଓ କୁଳର ମଧ୍ୟ ନରକବାସ ହୁଏ । ଏମାନଙ୍କର ପିତୃଲୋକମାନେ ଅନ୍ନ ପିଣ୍ଡ ତର୍ପଣାଦି କିଛି ପାନ୍ତିନାହିଁ । ତେଣୁ ସେମାନଙ୍କର ମଧ୍ୟ ଅଧୋଗତି ହୁଏ । ୪୨ ।

ଏପରି ବର୍ଣ୍ଣସଙ୍କର ଉତ୍ପତ୍ତି କରିବା ଦୋଷରୁ କୁଳଘାତକମାନଙ୍କର ଜାତିଧର୍ମ ଓ କୁଳଧର୍ମ ସବୁ ନଷ୍ଟ ହୋଇଯାଏ । ୪୩ ।

ହେ ଜନାର୍ଦ୍ଦନ, ଯେଉଁମାନଙ୍କର କୁଳଧର୍ମ ନଷ୍ଟହୁଏ, ସେମାନଙ୍କୁ ସର୍ବଦା ନରକରେ ବାସ କରିବାକୁ ପଡ଼େ । ଏହା ଅମ୍ଭେମାନେ ଶୁଣିଅଛୁଁ ।୪୪।

ଓହୋ ! କି ଦୁଃଖର ବିଷୟ ଅମ୍ଭେମାନେ କି ମହାପାପ କରିବାକୁ ବସିଅଛୁଁ । ରାଜ୍ୟ ସୁଖ ଲୋଭରେ ସ୍ୱଜନମାନଙ୍କୁ ହତ କରିବାକୁ ଉଦ୍ୟତ ହୋଇଅଛୁଁ । ୪୫ ।

ଯଦି ଶସ୍ତ୍ରଧାରୀ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ମୋତେ ପ୍ରତିକାରଶୂନ୍ୟ ଓ ଅସ୍ତ୍ରଶସ୍ତ୍ର ବିହୀନ ଦେଖି ଯୁଦ୍ଧରେ ନିହତ କରନ୍ତି ତେବେ ତାହା ମୋହର କଲ୍ୟାଣ ଜନକ ହେବ । ୪୬ ।

ଏହାପରେ କହି ରଣମଧ୍ୟରେ ଶୋକାତୁର ଭାବରେ ଅର୍ଜୁନ ଧନୁଶର ତ୍ୟାଗକରି ରଥର ପଛ ପାଖରେ ବସିଗଲେ । ୪୭ ।

ଓଁ ତତ୍‌ସତ୍ ।

ଏହିପରି ଭଗବଦ୍‌ଗୀତାରୂପୀ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣ ଅର୍ଜୁନ ସଂବାଦରେ ଅର୍ଜୁନ ବିଷାଦ ଯୋଗନାମକ ପ୍ରଥମ ଅଧ୍ୟାୟର ସମାପ୍ତି

—o—

( ୨ )

## ସାଂଖ୍ୟଯୋଗ ।

ମୋହବଶ ହୋଇ ମନୁଷ୍ୟ ଅଧର୍ମକୁ ଧର୍ମ ମନେକରେ । ମୋହ ହେତୁ ଅର୍ଜୁନଙ୍କ ଭିତରେ ଆତ୍ମପର ଭେଦ ଆସିଥିଲା । ଏପରି ଭେଦଭାବ ମିଥ୍ୟା । ଏହିକଥା ଶିକ୍ଷା ଦେବାପାଇଁ ଶ୍ରୀକୃଷ୍ଣ, ଶରୀର ଓ ଆତ୍ମାର ଭିନ୍ନତା ଦେଖାଇ ଅଛନ୍ତି । ଶରୀର ଅନିତ୍ୟ ଓ ପୃଥକ୍ ଏବଂ ଆତ୍ମା ନିତ୍ୟ ଓ ଏକ । ମନୁଷ୍ୟ କେବଳ ପୁରୁଷାର୍ଥର ଅଧିକାରୀ; ପରିଣାମର ନୁହେଁ । ଯାହା ନିଜର କର୍ତ୍ତବ୍ୟ ବୋଲି ନିଶ୍ଚୟ କରିବ ସେଥିରେ ନିଶ୍ଚିନ୍ତ ରହି ତତ୍ପର ହେବା ଉଚିତ । ଏପରି ତନ୍ମୟତାରେ ମନୁଷ୍ୟ ମୋକ୍ଷ ଲାଭ କରିପାରେ ।

ସଞ୍ଜୟ କହିଲେ—ଏହିପରି ଦୟାରେ ଅଧୀର, ଅଶ୍ରୁପୂର୍ଣ୍ଣ ବ୍ୟାକୁଳ ନେତ୍ର, ଦୁଃଖିତ ଅର୍ଜୁନଙ୍କ ପ୍ରତି ଶ୍ରୀକୃଷ୍ଣ ଏହିବାକ୍ୟ କହିଲେ ।୧ ।

ଶ୍ରୀ ଭଗବାନ୍ କହିଲେ—ଶ୍ରେଷ୍ଠ ପୁରୁଷମାନଙ୍କ ପକ୍ଷରେ ଯାହା ଶୋଭନୀୟ ନୁହେଁ, ଯାହା ମନୁଷ୍ୟକୁ ସ୍ୱର୍ଗ ପ୍ରାପ୍ତିରୁ ବଞ୍ଚିତ କରିଏ, ଏବଂ ମନୁଷ୍ୟ ପକ୍ଷରେ ମଧ୍ୟ ଯାହା ନିନ୍ଦନୀୟ ଅଟେ ତୁମ୍ଭର ଏ ବିଷମ ସମୟରେ ସେପରି ମୋହ ଆସିଲା କୁଆଡୁ ? ।୨।

ହେ ପାର୍ଥ, କାତର ହୁଅନାହିଁ । ଏହା ତୁମ୍ଭ ପକ୍ଷରେ ଶୋଭନୀୟ ନୁହେଁ । ହେ ପରନ୍ତପ, ହୃଦୟର ତୁଚ୍ଛ ଦୁର୍ବଳତାକୁ ତ୍ୟାଗ କରି ତୁମେ ଉଠ । ୩ ।

ଅର୍ଜୁନ କହିଲେ—ହେ ମଧୁସୂଦନ, ଭୀଷ୍ମ ଓ ଦ୍ରୋଣଙ୍କ ଏହି ଯୁଦ୍ଧ ଭୂମିରେ ମୁଁ କିପରି ଶର ମାରିବି ? ହେ ଶତ୍ରୁ ବିମର୍ଦ୍ଦନ, ଏମାନେ ଯେ ମୋର ପୂଜ୍ୟ ବ୍ୟକ୍ତି । ୪ ।

ମହାନୁଭବ ଗୁରୁଜନ ମାନଙ୍କୁ ବଧ ନ କରି ଯଦି ଏ ସଂସାରରେ ଭିକ୍ଷାଦ୍ୱାରା ଚଳିବାକୁ ହୁଏ ତେବେ ତାହାହିଁ ଶ୍ରେଷ୍ଠ । କାରଣ ତାହା ନ ହେଲେ ଗୁରୁଜନ ମାନଙ୍କୁ ହତ୍ୟା କରି ସେମାନଙ୍କର ରକ୍ତ ମିଶ୍ରିତ ବିଷୟ ସୁଖ ମୋତେ ଭୋଗ କରିବାକୁ ପଡ଼ିବ । ୫ ।

ଆମ୍ଭେମାନେ ଜିତୁଁ କିମ୍ବା ସେମାନେ ଜିତନ୍ତୁ, ଏହି ଉଭୟ ମଧ୍ୟରୁ କେଉଁଟି ଶ୍ରେୟସ୍କର ହେବ ମୁଁ ତାହା ବୁଝି ପାରୁନାହିଁ । ଯେଉଁମାନଙ୍କୁ ମାରି ମୁଁ ଜୀବିତ ରହିବାକୁ ଇଚ୍ଛା କରୁନାହିଁ ସେହି ଧୃତରାଷ୍ଟ୍ରଙ୍କର ପୁତ୍ରଗଣ ସମ୍ମୁଖରେ ଦଣ୍ଡାୟମାନ ହୋଇଅଛନ୍ତି । ୬ ।

ଦୀନତା ବଶତଃ ମୋର ସ୍ୱାଭାବିକ ବୃତ୍ତି ନଷ୍ଟ ହୋଇ ଗଲାଣି । କର୍ତ୍ତବ୍ୟ ବିଷୟରେ ମୋର ବୁଦ୍ଧି ହଜି ଯାଇଅଛି, ତେଣୁ ଆପଣଙ୍କୁ ପଚାରୁଅଛି – ଯାହା ମୋ ପକ୍ଷରେ ମଙ୍ଗଳ ଜନକ ହେବ ତାହା ନିଶ୍ଚୟ କରି ଆପଣ ମୋତେ କୁହନ୍ତୁ । ମୁଁ ଆପଣଙ୍କର ଶିଷ୍ୟ ଅତଏବ ଆପଣଙ୍କର ଶରଣାପନ୍ନ, ମୋତେ ଉପଦେଶ ଦେଉନ୍ତୁ । ୭ ।

କାରଣ ସମସ୍ତ ପୃଥିବୀରେ ସମୃଦ୍ଧିଶାଳୀ ଓ ନିଷ୍କଣ୍ଟକ ରାଜ୍ୟ ଏପରି କି ସ୍ୱର୍ଗରେ ଇନ୍ଦ୍ରପଦ ମିଳିଲେ ମଧ୍ୟ, ମୁଁ ଏପରି କିଛି ଦେଖୁନାହିଁ ଯଦ୍ୱାରା କି ମୋର ଇନ୍ଦ୍ରିୟମାନଙ୍କୁ ନିସ୍ତେଜ କରି ଦେଉଥିବା ଏହି ଶୋକକୁ ଦୂର କରି ପାରିବ । ୮ ।

ସଞ୍ଜୟ କହିଲେ—ହେ ରାଜନ୍, ଗୁଡ଼ାକେଶ ଅର୍ଜ୍ଜୁନ ଉପର୍ଯ୍ୟୁକ୍ତ ଭାବରେ ଶ୍ରୀକୃଷ୍ଣଙ୍କୁ କହି "ମୁଁ ଯୁଦ୍ଧ କରିବ ନାହିଁ" ବୋଲି ତୁନି ହୋଇଗଲେ । ୯ ।

ହେ ଭାରତ ! ଶ୍ରୀକୃଷ୍ଣ ଉଭୟ ସେନା ମଧ୍ୟରେ ଅତି କ୍ଷୁଣ୍ଣ ମନରେ ବସିଥିବା ଅର୍ଜ୍ଜୁନଙ୍କ ପ୍ରତି ମନ୍ଦ ମନ୍ଦ ହସି ଏହିପରି କହିଲେ—୧୦

ଶ୍ରୀ ଭଗବାନ କହିଲେ—ହେ ଅର୍ଜ୍ଜୁନ, ଶୋକ କରିବାର ଅଯୋଗ୍ୟ ବିଷୟରେ ତୁମ୍ଭେ ଶୋକ କରୁଅଛ ଅଥଚ ଏଣେ ପଣ୍ଡିତଙ୍କ ପରି କଥା କହୁଛ । ପଣ୍ଡିତ ବ୍ୟକ୍ତି ମୃତ ବା ଜୀବିତ ଙ୍କ ପାଇଁ ଶୋକ କରନ୍ତି ନାହିଁ । ୧୧ ।

ପ୍ରକୃତରେ ମୁଁ, ତୁମ୍ଭେ କିମ୍ବା ଏହି ରାଜାମାନେ ପୂର୍ବେ ଯେ ନଥିଲେ, ଏବଂ ପରେ ଯେ ନ ରହିବେ ଏପରି ନୁହେଁ । ୧୨ ।

ଯେପରି ଦେହଧାରୀ କୌମାର, ଯୌବନ ଓ ଜରା ଅବସ୍ଥା ପ୍ରାପ୍ତହୁଏ, ସେହିପରି ସେ ଅନ୍ୟ ଏକ ଦେହ ମଧ୍ୟ ପ୍ରାପ୍ତହୁଏ । ତେଣୁ ପଣ୍ଡିତ ମାନେ ଏ ବିଷୟରେ ମୋହିତ ହୁଅନ୍ତି ନାହିଁ । ୧୩ ।

ହେ କୌନ୍ତେୟ, ଇନ୍ଦ୍ରିୟମାନଙ୍କ ସହିତ ବାହ୍ୟ ବସ୍ତୁ ସଂଯୁକ୍ତ ହେଲେ ଶୀତଳ ଗରମ ଓ ସୁଖ ଦୁଃଖ ଅନୁଭୂତ ହୁଏ । ଏହି ସବୁ ସୁଖ ଦୁଃଖ ସର୍ବଦା ସମାନ ନଥାଏ । ସେ ସବୁ ଆସେ ପୁଣି ଯାଏ । ତେଣୁ ତାହା ଅନିତ୍ୟ, ତୁମେ ସେ ସବୁକୁ ସହ୍ୟକର । ୧୪ ।

ହେ ପୁରୁଷ ଶ୍ରେଷ୍ଠ, ସୁଖ ଦୁଃଖ ଉଭୟ ଯାହାଙ୍କ ଦୃଷ୍ଟିରେ ସମାନ, ଏବଂ ଯାହାଙ୍କୁ ଏହି ସୁଖ ଦୁଃଖ ଅଭିଭୂତ କରି ନପାରେ କେବଳ ସେହି ବୁଦ୍ଧିମାନ୍ ପୁରୁଷ ମୋକ୍ଷ ପାଇବାର ଉପଯୁକ୍ତ ଅଟନ୍ତି । ୧୫ ।

ଯାହା ଅସତ୍ ତାହାର ସତ୍ତା ନାହିଁ, ଏବଂ ଯାହା ସତ୍ ତାହାର ବିନାଶ ନାହିଁ । ଜ୍ଞାନୀମାନେ ସତ ଓ ଅସତ ଉଭୟକୁ ଦେଖି ତହିଁର ତତ୍ତ୍ୱ ନିର୍ଣ୍ଣୟ କରିଛନ୍ତି । ୧୬ ।

ଏହା ମନେରଖିବା ଉଚିତ କି, ଯେ ସମସ୍ତ ଜଗତ ବ୍ୟାପି ରହିଅଛନ୍ତି ସେ ଅବିନାଶୀ ଅଟନ୍ତି । ଏହି ଅବ୍ୟୟ ତତ୍ତ୍ୱକୁ ନାଶ କରିବାକୁ କେହି ସମର୍ଥ ନୁହନ୍ତି । ୧୭ ।

ଏହି ଦେହର ବିନାଶ ଅଛି, ମାତ୍ର ଏହି ଦେହକୁ ଯେ ଧାରଣ କରିଥାନ୍ତି ସେହି ଆତ୍ମାର ବିନାଶ 'ନାହିଁ' । ତାହା ନିତ୍ୟ ଅର୍ଥାତ୍ ସର୍ବଦା ଏକରୂପ ଓ ଅପ୍ରମେୟ ଅଟେ; ଅତଏବ ହେ ଭାରତ, ତୁମେ ଯୁଦ୍ଧ କର । ୧୮ ।

ଯେ ଏହି ଆତ୍ମାକୁ ହନ୍ତା ବୋଲି ଜାଣେ କିଂବା ଏହାକୁ ହତ କରାଯାଇ ପାରେ ବୋଲି ଯେ ମନେକରେ ଏହି ଦୁହିଙ୍କ ମଧ୍ୟରୁ କେହି କିଛି ଜାଣନ୍ତି ନାହିଁ । କାରଣ ଆତ୍ମା କାହାକୁ ମାରେ ନାହିଁ କିମ୍ବା ମରେ ନାହିଁ । ୧୯ ।

ଏହି ଆତ୍ମା କେବେହେଁ ଜନ୍ମେ ନାହିଁ କିମ୍ବା ମରେ ନାହିଁ । ଏହା ଥିଲା, ବର୍ତ୍ତମାନ ମଧ୍ୟ ଅଛି, ପରେ ନ ରହିବ ଏପରି ମଧ୍ୟ ନୁହେ । କାରଣ ଆତ୍ମା ଅଜନ୍ମା, ସର୍ବଦା ଏକରୂପ, ଶାଶ୍ୱତ ଓ ପୁରାତନ ଅଟେ । ଶରୀର ନଷ୍ଟ ହେଲେ ଆତ୍ମା ନଷ୍ଟ ହୁଏ ନାହିଁ ୨୦ ।

ହେ ପାର୍ଥ, ଯେ ପୁରୁଷ ଆତ୍ମାକୁ ଅବିନାଶୀ, ନିତ୍ୟ, ଜନ୍ମଶୂନ୍ୟ ଓ ଅବ୍ୟୟ ବୋଲି ଜାଣନ୍ତି ସେ କିପରି କାହାକୁ ମାରିବ ଅବା ମରାଇବ ? । ୨୧ ।

ମନୁଷ୍ୟ ଯେପରି ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରି ଅପର ନୂତନ ବସ୍ତ୍ର ପରିଧାନ କରେ, ଦେହଧାରୀ ଆତ୍ମା ସେହିପରି ଜୀର୍ଣ୍ଣଦେହ ପରିତ୍ୟାଗ

କରି ଅନ୍ୟ ନୂତନ ଦେହ ଧାରଣ କରେ । ୨୨ ।

ଏହାକୁ ଶସ୍ତ୍ର ଛେଦନ କରି ପାରେ ନାହିଁ, ଅଗ୍ନି ଦଗ୍ଧ କରି ପାରେନାହିଁ, ଜଳ ପଶିଇ ପାରେ ନାହିଁ, ଏବଂ ବାୟୁମଧ୍ୟ ଏହାକୁ ଶୁଷ୍କ କରିପାରେ ନାହିଁ । ୨୩ ।

ଏହା ମଧ୍ୟ କଟିଯିବା, ଜଳିଯିବା, ପଚିଯିବା, କିମ୍ବା ଶୁଖିଯିବା ବସ୍ତୁନୁହେଁ । ସୁତରାଂ ଆତ୍ମା ନିତ୍ୟ, ସର୍ବବ୍ୟାପୀ, ସ୍ଥିର, ଅଚଳ ଓ ସନାତନ ଅଟେ । ୨୪ ।

ଏହା ମନ ଓ ଇନ୍ଦ୍ରିୟ ମାନଙ୍କର ଅଗୋଚର । ଏହାର କୌଣସି ପ୍ରକାର ବିକାର ପ୍ରାପ୍ତି ନାହିଁ । ଅର୍ଥାତ୍ ଏହାର ରୂପର ପରିବର୍ତ୍ତନ ଘଟେ ନାହିଁ । ଅତଏବ ଏହାକୁ ଏପରି ଜାଣି ତୁମ୍ଭର ଶୋକ କରିବା ଉଚିତ ନୁହେଁ । ୨୫ ।

ଅଥବା ତୁମ୍ଭେ ଯଦି ବିଶ୍ୱାସ କର ଯେ ଏହାର ଜନ୍ମ ଯେପରି ଅଛି ମରଣ ମଧ୍ୟ ସେହିପରି ଅଛି, ତଥାପି ହେ ମହାବାହୋ, ଏଥିପାଇଁ ଶୋକ କରିବା ତୁମ୍ଭର ଉଚିତ ନୁହେଁ । ୨୬ ।

ତେବେ ଜନ୍ମହେଲେ ମରିବାକୁ ହୁଏ ଏବଂ ମଲେ ମଧ୍ୟ ଜନ୍ମ ହେବାକୁ ହୁଏ, ଏପରି ଅବସ୍ଥାରେ ଯାହା ଅନିବାର୍ଯ୍ୟ ସେଥିପାଇଁ ଶୋକ କରିବା ଉଚିତ ନୁହେଁ । ୨୭ ।

ହେ ଭାରତ, ଭୂତମାନଙ୍କର ଜନ୍ମର ପୂର୍ବ ଏବଂ ମରଣର ପରବର୍ତ୍ତୀ ଅବସ୍ଥା ଦେଖାଯାଏ ନାହିଁ, ଏଣୁ ତାହା ଅବ୍ୟକ୍ତ ଅଟେ । କେବଳ ମଧ୍ୟମ ଅବସ୍ଥା ବ୍ୟକ୍ତ ଅର୍ଥାତ୍ ପ୍ରକାଶିତ । ଅତଏବ ସେ ବିଷୟରେ ଆଉ ଚିନ୍ତା କରିବାର କାରଣ କଣ ? । ୨୮ ।

ଟିପ୍ପଣୀ—ଭୂତ କହିଲେ ସ୍ଥାବର ଜଙ୍ଗମ ସୃଷ୍ଟିକୁ ବୁଝାଏ ।

କେହି କେହି ଏହାକୁ ଆଶ୍ଚର୍ଯ୍ୟ ପରି ବୋଧ କରନ୍ତି, କେହି କେହି, ଏହାକୁ ଆଶ୍ଚର୍ଯ୍ୟପରି ବର୍ଣ୍ଣନା କରନ୍ତି, କେହି କେହି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଏହାର ବର୍ଣ୍ଣନା ଶୁଣନ୍ତି କିନ୍ତୁ ଶୁଣି ମଧ୍ୟ କେହି ଏହାକୁ ସ୍ୱରୂପତଃ ଜାଣି ପାରନ୍ତି ନାହିଁ । ୨୯ ।

ହେ ଭାରତ, ସମସ୍ତଙ୍କ ଶରୀରରେ ଅବସ୍ଥାନ କରି ଏହି ଦେହଧାରୀ ଆତ୍ମା ଅବଧ୍ୟ ଅଟେ । ଅତଏବ କାହାରି ପାଇଁ ଶୋକ କରିବା ତୁମ୍ଭର ଉଚିତ ନୁହେଁ । ୩୦ ।

ଟିପ୍ପଣୀ—ଏ ପର୍ଯ୍ୟନ୍ତ ଶ୍ରୀକୃଷ୍ଣ ବୁଦ୍ଧିବଳରେ ଆତ୍ମାର ନିତ୍ୟତା ଏବଂ ଦେହର ଅନିତ୍ୟତା ବୁଝାଇ ସୂଚନା ଦେଉଛନ୍ତି ଯେ, କୌଣସି ଅବସ୍ଥାରେ ଶରୀର ତ୍ୟାଗ କରିବା ଉଚିତ ବୋଲି ବିବେଚିତ ହେଲେ ସେତେବେଳେ ଆତ୍ମପର ଭେଦ ଦୃଷ୍ଟିରେ 'କୌରବମାନେ ସ୍ୱଜନ ସେମାନଙ୍କୁ କିପରି ମାରିବା' ଏ ପ୍ରକାର ଚିନ୍ତା ମୋହଜନକ ଅଟେ । ଏହା କହି କ୍ଷତ୍ରିୟଧର୍ମ କ'ଣ ତାହା ବର୍ତ୍ତମାନ ଅର୍ଜ୍ଜୁନଙ୍କୁ ଶୁଣାଉ ଅଛନ୍ତି ।

ନିଜର ଧର୍ମ ହିସାବରେ ବୁଝିଲେ ମଧ୍ୟ ତୁମ୍ଭର ଏପରି ବିଚଳିତ ହେବା ଉଚିତ ନୁହେଁ । କାରଣ ଧର୍ମଯୁଦ୍ଧ ଅପେକ୍ଷା କ୍ଷତ୍ରିୟର ଆଉ କାହିଁରେ ଅଧିକ ଶ୍ରେୟ ନାହିଁ । ୩୧ ।

ହେ ପାର୍ଥ, ସ୍ୱର୍ଗର ମୁକ୍ତ ଦ୍ୱାର ସ୍ୱରୂପ ଏପରି ଯୁଦ୍ଧ ଅଯାଚିତ ଭାବରେ ଯେଉଁ କ୍ଷତ୍ରିୟମାନଙ୍କ ନିକଟରେ ଉପସ୍ଥିତ ହୁଏ, ସେହି କ୍ଷତ୍ରିୟ ପ୍ରକୃତ ଭାଗ୍ୟବାନ । ୩୨ ।

ଅତଏବ ଯଦି ତୁମ୍ଭେ ତୁମ୍ଭର ଧର୍ମାନୁକୂଳ ଏହି ଯୁଦ୍ଧ ନ କର, ତେବେ ତୁମ୍ଭେ ତଦ୍ଦ୍ୱାରା ସ୍ୱଧର୍ମ ଓ କୀର୍ତ୍ତି ତ୍ୟାଗ କରି ପାପ ଅର୍ଜ୍ଜନ କରିବ । ୩୩ ।

କେବଳ ଏତିକି ନୁହେଁ, ସମସ୍ତେ ଚିରକାଳ ପାଇଁ ତୁମ୍ଭର ନିନ୍ଦା କରିବେ । ସମ୍ମାନିତ ଲୋକ ପକ୍ଷରେ ଲୋକନିନ୍ଦା ମରଣଠାରୁ ଅଧିକ ଦୁଃଖ ଦାୟକ ଅଟେ । ୩୪ ।

ମହା ମହାରଥୀମାନେ ଭାବିବେ ଯେ ତୁମେ ଭୟକରି ଯୁଦ୍ଧ ଛାଡ଼ି ପଳାଇଗଲ । ଆହୁରି ଯେଉଁମାନେ ତୁମ୍ଭଙ୍କୁ ଅତି ବଡ଼ ବୋଲି ମାନୁଥିଲେ, ସେମାନେ ତୁମ୍ଭଙ୍କୁ ଅତି ତୁଚ୍ଛ ମନେ କରିବେ । ୩୫ ।

ତୁମ୍ଭର ଶତ୍ରୁମାନେ ତୁମ୍ଭର ପରାକ୍ରମକୁ ନିନ୍ଦା କରୁ କରୁ ବହୁତ ଅକଥନୀୟ କଥା କହିବେ । ଏହାଠାରୁ ଅଧିକ ଦୁଃଖକର କଥା ଆଉ କ'ଣ ଅଛି ? ୩୬ ।

ଯଦି ତୁମ୍ଭେ ଯୁଦ୍ଧରେ ନିହତ ହୁଅ ତେବେ ସ୍ୱର୍ଗଲାଭ କରିବ, ଯଦି ଜୟୀ ହୁଅ ତେବେ ରାଜ୍ୟ ଭୋଗ କରିବ । ଅତଏବ ହେ କୌନ୍ତେୟ, ଦୃଢ ସଂକଳ୍ପ କରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ । ୩୭ ।

ଟିପ୍ପଣୀ—ଏହିପରି ଭଗବାନ ଆତ୍ମାର ନିତ୍ୟତା ଓ ଦେହର ଅନିତ୍ୟତା ବୁଝାଇଲେ । ପୁଣି ବଳେ ବଳେ ଉପସ୍ଥିତ ଯୁଦ୍ଧ କ୍ଷତ୍ରିୟର ଧର୍ମହାନି କରେ ନାହିଁ ବୋଲି କହିଲେ । ଏହିପରି ୩୧ ଶ୍ଳୋକଠାରୁ ଭଗବାନ ପରମାର୍ଥ ସହିତ ଉପଯୋଗିତାକୁ ମିଳନ କରାଇ ଅଛନ୍ତି । ଏହା କହି ଭଗବାନ ଗୀତାର ମୁଖ୍ୟ ଉପଦେଶ ଏକ ଶ୍ଳୋକରେ ବ୍ୟକ୍ତ କରୁ ଅଛନ୍ତି ।

ସୁଖ, ଦୁଃଖ, ଲାଭ, କ୍ଷତି, ଜୟ, ପରାଜୟ, ଇତ୍ୟାଦି ପ୍ରତି ସମଭାବ ରଖି ଯୁଦ୍ଧ କରିବା ନିମିତ୍ତ ପ୍ରସ୍ତୁତ ହୁଅ । କାରଣ ଏପରି ଭାବରେ ଯୁଦ୍ଧ କଲେ ତୁମ୍ଭେ ଆଉ ପାପରେ ଭାଗୀ ହେବ ନାହିଁ । ୩୮ ।

ସାଂଖ୍ୟ ସିଦ୍ଧାନ୍ତ ( ତର୍କବାଦ ) ଅନୁସାରେ ମୁଁ ତୁମ୍ଭଙ୍କୁ ତୁମ୍ଭର କର୍ତ୍ତବ୍ୟ ବିଷୟ କହିଗଲି, ବର୍ତ୍ତମାନ ଯୋଗବାଦ ଅନୁସାରେ ବୁଝାଉ-

ଅଛି, ଶୁଣ । ଏହାର ଆଶ୍ରୟ ନେଲେ କର୍ମ ବନ୍ଧନରୁ ତୁମ୍ଭେ ଛାଡ଼ିପାରିବ । ୩୯ ।

ଏଥିରେ ଆରମ୍ଭର ନାଶ ହୁଏ ନାହିଁ, ଅର୍ଥାତ୍ ଏହି ମାର୍ଗକୁ ଅନୁସରଣ କରି ଯେଉଁ କର୍ମ କରାଯାଏ ତାହାର ବିନାଶ ନାହିଁ, କିମ୍ବା ବିପରୀତ ଫଳ ମଧ୍ୟ ଫଳେ ନାହିଁ । ଏଥିରୁ ଯତ୍କିଞ୍ଚିତ ପାଳନ କରି ମନୁଷ୍ୟ ମହାବିପଦରୁ ନିଜକୁ ରକ୍ଷା କରି ପାରେ । ୪୦ ।

ହେ କୁରୁନନ୍ଦନ, ଯୋଗବାଦ ଅନୁସାରେ ନିଶ୍ଚୟାତ୍ମକ ବୁଦ୍ଧି ଏକରୂପ ଅଟେ । କିନ୍ତୁ ଅନିଶ୍ଚୟାତ୍ମକ ବୁଦ୍ଧି ବହୁଶାଖା ପୂର୍ଣ୍ଣ ଏବଂ ଅନନ୍ତରୂପ ଧାରଣ କରେ । ୪୧ ।

ଟିପ୍ପଣୀ—ବୁଦ୍ଧିର ଏକାଗ୍ରତା ନଷ୍ଟ ହେଲେ ତାହା ଅନେକ ଆକାର ଧାରଣ କରେ । ସେତେବେଳେ ତାହା ବୁଦ୍ଧି ନ ହୋଇ ବାସନାରେ ପରିଣତ ହୁଏ । ଏହି ହେତୁରୁ ବହୁବୁଦ୍ଧିର ଅର୍ଥ 'ବାସନା' ।

ଅଜ୍ଞାନ ବେଦବାଦୀ "ବେଦଭିନ୍ନ ଅନ୍ୟ କିଛି ଜ୍ଞାତବ୍ୟ ବିଷୟ ନାହିଁ" ବୋଲି କହୁଥିବା ଲୋକେ, କାମନା ପରିପୂର୍ଣ୍ଣ ଲୋକେ, ସ୍ୱର୍ଗକୁ ଶ୍ରେଷ୍ଠ ମାନୁଥିବା ମୂଢ଼ଜନମାନେ, ଜନ୍ମ ମରଣରୂପକ କର୍ମର ଫଳପ୍ରଦ, ଏବଂ ଭୋଗ ଐଶ୍ୱର୍ଯ୍ୟ ଲାଭ କରିବା ଉଦ୍ଦେଶ୍ୟରେ ସମ୍ପାଦିତ କ୍ରିୟା କଳାପର ପ୍ରଲୋଭନକର ବର୍ଣ୍ଣନାର ସୁନ୍ଦର ସୁନ୍ଦର ବାକ୍ୟ ସବୁ ପ୍ରଶଂସା କରୁଥାନ୍ତି । ଏହି ହେତୁ ସେମାନଙ୍କ ମନ ଭୋଗ ଓ ଐଶ୍ୱର୍ଯ୍ୟରେ ଲାଖିଯାଏ । ସୁତରାଂ ସେମାନଙ୍କ ବୁଦ୍ଧି ନିଶ୍ଚୟାତ୍ମକ ନ ଥିବାରୁ ସମାଧିରେ ମଧ୍ୟ ସ୍ଥିର ରହିପାରେ ନାହିଁ ।୪୨।୪୩।୪୪।

ଟିପ୍ପଣୀ—ଉପର ତିନିଶ୍ଳୋକରେ ଯୋଗବାଦର ବିରୁଦ୍ଧ କର୍ମକାଣ୍ଡ ଅଥବା ବେଦବାଦର ବର୍ଣ୍ଣନା କରାଯାଇଅଛି । କର୍ମକାଣ୍ଡ ଅଥବା...

ବେଦବାଦର ଅର୍ଥ ଫଳଲାଭ ପାଇଁ ଅସଂଖ୍ୟ କ୍ରିୟା । ଏହି ସବୁ କ୍ରିୟା, ବେଦର ରହସ୍ୟ ଓ ବେଦାନ୍ତ ଠାରୁ ପୃଥକ୍ । ପୁଣି ଅଳ୍ପ ଫଳପ୍ରଦ ହେବାରୁ ନିରର୍ଥକ ଅଟେ ।

ହେ ଅର୍ଜୁନ, ଯେଉଁ ତିନିଗୁଣ ବେଦର ବିଷୟ ଅଟେ, ତୁମ୍ଭେ ତହିଁରୁ ନିର୍ଲିପ୍ତ ରହ । ସୁଖ ଦୁଃଖର ଦ୍ୱନ୍ଦ୍ୱରୁ ମୁକ୍ତ ହୁଅ । ସର୍ବଦା ସତ୍ୟ ବସ୍ତୁରେ ସ୍ଥିର ରହ । କୌଣସି ବସ୍ତୁ ପାଇବା କିଂବା ପ୍ରାପ୍ତବସ୍ତୁର ରକ୍ଷା କରିବା ଝଂଝଟରୁ ମୁକ୍ତ ହୋଇ ଆତ୍ମନିଷ୍ଠ ହୁଅ । ୪୫ ।

କୂଅ ଅର୍ଥାତ୍ କ୍ଷୁଦ୍ର ଜଳାଶୟ ଦ୍ୱାରା ମନୁଷ୍ୟର ଯେଉଁ ସବୁ ପ୍ରୟୋଜନ ସିଦ୍ଧ ହୋଇ ପାରିବ ସେହି ସବୁ ପ୍ରୟୋଜନ ସରୋବର ଅର୍ଥାତ୍ ବୃହତ୍ ଜଳାଶୟ ଦ୍ୱାରା ମଧ୍ୟ ସିଦ୍ଧ ହୋଇ ପାରିବ । ସେହିପରି ବେଦରେ ଯାହା ସବୁ ଅଛି ଅର୍ଥାତ୍ ବେଦରେ ବର୍ଣ୍ଣିତ କାମ୍ୟ କର୍ମରେ ସ୍ୱର୍ଗାଦି ଫଳରୂପକ ଯେଉଁ ଆନନ୍ଦ ଅଛି ଜ୍ଞାନବାନ୍ ବ୍ରହ୍ମପରାୟଣ ପୁରୁଷର ଆତ୍ମାନୁଭୂତିରେ ତାହା ( ସେହି ଆନନ୍ଦ ) ମଧ୍ୟ ଅଛି । ୪୬ ।

କର୍ମରେ ତୁମ୍ଭର ଅଧିକାର, ମାତ୍ର କର୍ମରୁ ଉତ୍ପନ୍ନ ହେଉଥିବା ଫଳ ବିଷୟରେ ତୁମ୍ଭର କିଛିମାତ୍ର ଅଧିକାର ନାହିଁ । କର୍ମଫଳ ତୁମ୍ଭର ଆକାଂକ୍ଷା ନ ହେଉ । କର୍ମ ନକରିବାକୁ ମନ ବଳାଇବା ତୁମ୍ଭର ଉଚିତ ନୁହେଁ । ୪୭ ।

ହେ ଧନଞ୍ଜୟ, ଆସକ୍ତି ପରିତ୍ୟାଗ କରି ଯୋଗସ୍ଥ ହୋଇ ଅର୍ଥାତ୍ ଫଳ ପାଅ ଅବା ନ ପାଅ ଉଭୟକୁ ସମାନ ଜ୍ଞାନ କରି, ତୁମ୍ଭେ କର୍ମ କରିଯାଅ, କାରଣ ଏହି ସମତାର ନାମ "ଯୋଗ" । ୪୮ ।

ହେ ଧନଞ୍ଜୟ, ସାମ୍ୟବୁଦ୍ଧି ( ଅନାସକ୍ତ କର୍ମ ) ତୁଳନାରେ କେବଳ ( କାମ୍ୟ ) କର୍ମ ଅତି ନିକୃଷ୍ଟ ଅଟେ । ଅତଏବ ତୁମ୍ଭେ ଏହି ସାମ୍ୟ ବୁଦ୍ଧିର ଆଶ୍ରୟ ଗ୍ରହଣ କର । ଫଳପ୍ରତି ଦୃଷ୍ଟି ରଖି କର୍ମ କରୁଥିବା ମନୁଷ୍ୟ ଦୟାର ପାତ୍ର ଅଟେ । ସାମ୍ୟବୁଦ୍ଧି ଅର୍ଥ ଯୋଗ । ୪୯ ।

ବୁଦ୍ଧିଯୁକ୍ତ ଅର୍ଥାତ୍ ସମଭାବାପନ୍ନ ପୁରୁଷକୁ ଇହଲୋକରେ ପାପପୁଣ୍ୟ ସ୍ପର୍ଶ କରେ ନାହିଁ । ଅତଏବ ସମଭାବ ( ଅନାସକ୍ତ ବୁଦ୍ଧି ) ଲାଭ କରିବା ପାଇଁ ତୁମେ ଯତ୍ନ କର । କାରଣ ସମତା କର୍ମ ସାଧନର କୌଶଳ ଅଟେ । ୫୦ ।

କାରଣ ସମଭାବାପନ୍ନ ବ୍ୟକ୍ତି କର୍ମରୁ ଜାତ ଫଳ ତ୍ୟାଗକରି ଜନ୍ମରୂପୀ ବନ୍ଧନରୁ ମୁକ୍ତ ହୋଇ ସର୍ବପ୍ରକାର ଭୟଶୂନ୍ୟଗତି ତଥା ମୋକ୍ଷପଦକୁ ପ୍ରାପ୍ତ ହୁଅନ୍ତି । ୫୧ ।

ଯେତେବେଳେ ତୁମ୍ଭର ବୁଦ୍ଧି ମୋହରୂପ-ପଙ୍କକୁ ପାରହୋଇ ଯିବ, ସେତେବେଳେ ତୁମ୍ଭେ, ଯାହା ଶୁଣିଅଛ, ଅଥବା ଯାହା ଶୁଣିବାକୁ ଅଦ୍ୟାପି ବାକି ଅଛି ସେ ଉଭୟ ପ୍ରତି ତୁମ୍ଭେ ଉଦାସୀନ ହୋଇଯିବ । ୫୨ ।

ଅନେକ ପ୍ରକାର ସିଦ୍ଧାନ୍ତ ଶୁଣି ଶୁଣି ବିଚଳିତ ହୋଇଥିବା ତୁମ୍ଭର ବୁଦ୍ଧି ଯେତେବେଳେ ସମାଧିରେ ସ୍ଥିର ହୋଇ ରହିବ ସେତେବେଳେ ତୁମ୍ଭେ ସମତା ଲାଭ କରିବ । ୫୩ ।

ଅର୍ଜ୍ଜୁନ କହିଲେ—ହେ କେଶବ, ସ୍ଥିତପ୍ରଜ୍ଞ ଅଥବା ସମାଧିସ୍ଥ ବ୍ୟକ୍ତିର ଲକ୍ଷଣ କ'ଣ ? ସେ କି ପ୍ରକାର କଥା କହନ୍ତି, କିପରି ରହନ୍ତି ଏବଂ କିପରି ଚାଲନ୍ତି । ୫୪ ।

ଶ୍ରୀ ଭଗବାନ କହିଲେ—ହେ ପାର୍ଥ, ଯେତେବେଳେ ମନୁଷ୍ୟ ମନରେ ଜାଗି ଉଠୁଥିବା ସର୍ବବିଧ କାମନାକୁ ପରିତ୍ୟାଗ କରେ ଏବଂ ଆତ୍ମା ଦ୍ୱାରାହିଁ ଆତ୍ମାରେ ସନ୍ତୁଷ୍ଟ ରହେ ସେତେବେଳେ ସେହି ବ୍ୟକ୍ତିକୁ ସ୍ଥିତପ୍ରଜ୍ଞ କହନ୍ତି । ୫୫

ଟିପ୍ପଣୀ—ଆତ୍ମା ଦ୍ୱାରା ଆତ୍ମାରେ ସନ୍ତୁଷ୍ଟ ରହିବା ଅର୍ଥାତ୍ ଆତ୍ମାର ଆନନ୍ଦ ନିଜ ଭିତରେ ଅନ୍ୱେଷଣ କରିବା ଦରକାର । ସୁଖ

ଦୁଃଖପ୍ରଦ ବାହ୍ୟ ବସ୍ତୁ ଉପରେ ଆନନ୍ଦ ନିର୍ଭର କରେ ନାହିଁ । ଆନନ୍ଦ ସୁଖ ଠାରୁ ଭିନ୍ନ, ଏହା ମନେ ରଖିବା ଉଚିତ । ମୋତେ ପଇସା ମିଳିଲେ ତହିଁରେ ମୋତେ ଯେଉଁ ସୁଖ ବୋଧହୁଏ, ତାହା ମୋହ । ମୁଁ ଦରିଦ୍ର, ମୁଁ କ୍ଷୁଧାରେ ବଡ଼ ଆତୁର, ତଥାପି ମୁଁ ଚୋରି କରୁନାହିଁ କିମ୍ବା ଅନ୍ୟ କୌଣସି ପ୍ରଲୋଭନରେ ପଡୁନାହିଁ । ଏହା ଭିତରେ ଯେଉଁ ଭାବ ଅଛି ତାହା ମୋତେ ଆନନ୍ଦ ଦେଉଅଛି । ଏହା ଆତ୍ମ ସନ୍ତୋଷ ।

ଯେ ମନ ଦୁଃଖରେ ଦୁଃଖୀ ହୁଅନ୍ତି ନାହିଁ ଏବଂ ଯାହାଙ୍କର ସୁଖପ୍ରତି ସ୍ପୃହା ନ ଥାଏ, କାମ କ୍ରୋଧ ଓ ଭୟରୁ ଯେ ମୁକ୍ତ ତାହାଙ୍କୁହିଁ ସ୍ଥିରବୁଦ୍ଧି ମୁନି କୁହାଯାଏ । ୫୬ ।

ସର୍ବତ୍ର ସ୍ପୃହାଶୂନ୍ୟ ହୋଇ ଯେଉଁ ବ୍ୟକ୍ତି ଯଥା ପ୍ରାପ୍ତ ଶୁଭ ଅଥବା ଅଶୁଭରେ ଆହ୍ଲାଦ କିମ୍ବା ଶୋକ ଅନୁଭବ କରନ୍ତି ନାହିଁ ତାହାଙ୍କର ବୁଦ୍ଧି ସ୍ଥିର ଅଟେ । ୫୭ ।

କଇଁଛ ଯେପରି ତାହାର ଅଙ୍ଗକୁ ଅନାୟାସରେ ସଙ୍କୁଚିତ କରିପାରେ ସେହିପରି ଯେଉଁ ପୁରୁଷ ଇନ୍ଦ୍ରିୟଗଣଙ୍କୁ ବିଷୟ ବାସନା ମଧ୍ୟରୁ ଅନାୟାସରେ ଟାଣି ଆଣି ପାରିବ, ସେତେବେଳେ ତାହାର ବୁଦ୍ଧି ସ୍ଥିର ହୋଇଅଛି ବୋଲି କୁହାଯିବ । ୫୮ ।

ଦେହଧାରୀ ନିରାହାରୀ ହେଲେ ତାହାର ବିଷୟ ଭୋଗ ଛୁଟିଯାଏ, ମାତ୍ର ଅନୁରାଗ ଛୁଟେ ନାହିଁ । କେବଳ ଈଶ୍ୱର ଦର୍ଶନରେ ସେହି ଅନୁରାଗ ଛୁଟିଯାଏ । ୫୯ ।

ଟିପ୍ପଣୀ—ଏହି ଶ୍ଳୋକ ଉପବାସାଦି କରିବାକୁ ମନା କରୁନାହିଁ, ବରଂ ସେ ସବୁର ମର୍ଯ୍ୟାଦା ପ୍ରକାଶ କରୁଅଛି । ବିଷୟାଭିଳାଷକୁ ଶାନ୍ତ

କରିବାକୁ ହେଲେ ଉପବାସ ଆବଶ୍ୟକ । ମାତ୍ର ତାହାର ମୂଳ ଅର୍ଥାତ୍ ବିଷୟ ଭୋଗ କରିବାର ଅନୁରାଗ କେବଳ ଈଶ୍ୱର ଦର୍ଶନରେ ଶାନ୍ତ ହୁଏ । ଈଶ୍ୱର ଦର୍ଶନ କରିବାପାଇଁ ଯାହାର ଇଚ୍ଛା ତୀବ୍ର ହୁଏ ସେ ଅନ୍ୟ ବିଷୟମାନ ଭୁଲିଯାଏ ।

ହେ କୌନ୍ତେୟ, ଇନ୍ଦ୍ରିୟ ଦମନ କରିବାକୁ ଯତ୍ନ କରୁଥିବା ଜ୍ଞାନୀ ପୁରୁଷ ମାନଙ୍କର ମନକୁ ମଧ୍ୟ ଏହି ପ୍ରବଳ ଇନ୍ଦ୍ରିୟଗଣ ବଳପୂର୍ବକ ନିଜ ନିଜ ଇଚ୍ଛାନୁସାରେ ହରଣ କରି ନିଅନ୍ତି । ୬୦ ।

ଅତଏବ ଏହିସବୁ ଇନ୍ଦ୍ରିୟମାନଙ୍କୁ ସଂଯମ କରି ମୋ'ଠାରେ ତନ୍ମୟ ହୋଇ ରହିବା ଯୋଗୀମାନଙ୍କର ଉଚିତ । କାରଣ ଇନ୍ଦ୍ରିୟଗଣ ଯାହାର ବଶୀଭୂତ ହୋଇଥାନ୍ତି ତାହାଙ୍କର ବୁଦ୍ଧି ସ୍ଥିର ଅଟେ । ୬୧ ।

ଟିପ୍ପଣୀ:—ଅତଏବ ଭକ୍ତି ବିନା ତଥା ଈଶ୍ୱରଙ୍କର ସାହାଯ୍ୟ ବିନା ମନୁଷ୍ୟର ଚେଷ୍ଟା କିଛି ନୁହେଁ ।

ବିଷୟକାଂକ୍ଷୀ ଲୋକର ବିଷୟ ସ୍ପୃହା ଉତ୍ପନ୍ନ ହୁଏ । ଏହି ଆସକ୍ତିରୁ କାମନା ( ଫଳପ୍ରାପ୍ତିର ଇଚ୍ଛା ) ଜାତ ହୁଏ । ଏହି କାମନାରୁ ପୁଣି କ୍ରୋଧ ଜାତ ହୁଏ । ୬୨ ।

ଟିପ୍ପଣୀଃ—କାମନା-ପରିପୂର୍ଣ୍ଣ ଲୋକର କ୍ରୋଧ ଅନିବାର୍ଯ୍ୟ ଅଟେ । କାରଣ କାମନା କଦାପି ତୃପ୍ତ ହୁଏ ନାହିଁ ।

କ୍ରୋଧ ବଶତଃ ମନୁଷ୍ୟ ବିବେକଶୂନ୍ୟ ହୋଇଯାଏ । ବିବେକ ଶୂନ୍ୟ ହେଲେ ସ୍ମରଣଶକ୍ତି ଲୋପପାଏ । ସ୍ମରଣଶକ୍ତି ଲୋପ ପାଇଲେ ମନୁଷ୍ୟ ଜ୍ଞାନ ( ବୁଦ୍ଧି ) ହରାଏ । ଜ୍ଞାନହୀନ ମନୁଷ୍ୟ ମୃତତୁଲ୍ୟ ଅଟେ ।୬୩।

ଯେ ବ୍ୟକ୍ତି ମନକୁ ବଶ କରି ଅଛନ୍ତି ଏବଂ ଯାହାଙ୍କର ଇନ୍ଦ୍ରିୟମାନେ ରାଗ ଦ୍ୱେଷ ବିହୀନ ହୋଇ ତାହାଙ୍କ ବଶରେ ଅଛନ୍ତି

ସେହି ପୁରୁଷ ଇନ୍ଦ୍ରିୟର କାର୍ଯ୍ୟ କଲେ ମଧ୍ୟ ଶରୀରର ପ୍ରସନ୍ନତା ରକ୍ଷି ପାରନ୍ତି । ୬୪ ।

ଚିତ୍ତ ପ୍ରସନ୍ନ ରହିଲେ ମନୁଷ୍ୟର ସବୁ ଦୁଃଖ ଦୂର ହୋଇଯାଏ । ଯାହାକୁ ପ୍ରସନ୍ନତା ମିଳିଯାଏ ତାହାଙ୍କ ବୁଦ୍ଧି ସତ୍ୱର ସ୍ଥିର ହୋଇଯାଏ । ୬୫ ।

ଯାହାର ସମତ୍ୱବ ନାହିଁ, ତାହାର ବିବେକ ନାହିଁ କିମ୍ବା ଭକ୍ତି ନାହିଁ । ଯାହାର ଭକ୍ତି ନାହିଁ ତାହାର ଶାନ୍ତି ନାହିଁ । ଯାହାର ମନରେ ଶାନ୍ତି ନାହିଁ ତାହାର ସୁଖ ଆସିବ ଅଉ କେଉଁଠାରୁ ? ୬୬ ।

ବିଷୟାସକ୍ତ ଇନ୍ଦ୍ରିୟମାନଙ୍କ ପଛରେ ଯାହାର ମନ ଧାବିତ ହୁଏ, ପାଣିରେ ନୌକାକୁ ପବନ ଯେପରି ଇତସ୍ତତଃ ଟାଣିନିଏ ତାହାର ମନ ତାହାର ବୁଦ୍ଧିକୁ ସେହିପରି ଇତସ୍ତତଃ ଟାଣି ନେଇଯାଏ । ୬୭ ।

ଅତଏବ ହେ ମହାବାହୋ, ଯାହାଙ୍କର ଇନ୍ଦ୍ରିୟଗଣ ନିଜ ନିଜ ବିଷୟମାନଙ୍କରୁ ପୂର୍ଣ୍ଣରୂପେ ନିବୃତ୍ତ ହୋଇ ନିଜର ଅଧୀନ ହୋଇଥାନ୍ତି ତାହାଙ୍କର ବୁଦ୍ଧି ସ୍ଥିର ଥାଏ, ଅର୍ଥାତ୍ ସେ ସ୍ଥିରବୁଦ୍ଧି ବା ସ୍ଥିତପ୍ରଜ୍ଞ ଅଟନ୍ତି । ୬୮ ।

ଯେତେବେଳେ ପ୍ରାଣୀମାନେ ଶୋଇଥାନ୍ତି ସେତେବେଳେ ସଂଯମୀ ପୁରୁଷ ଜାଗ୍ରତ ଥାନ୍ତି, ପୁଣି ସମସ୍ତେ ଯେତେବେଳେ ଜାଗ୍ରତ ଥାନ୍ତି, ଜ୍ଞାନବାନ ମୁନି ସେତେବେଳେ ଶୋଇଥାନ୍ତି । ୬୯ ।

ଟିପ୍ପଣୀ—ଭୋଗୀ ମନୁଷ୍ୟ ରାତି ବାରଘଣ୍ଟା ପର୍ଯ୍ୟନ୍ତ ନାଚ ତାମସା ଖାଇବା ପିଇବା ଇତ୍ୟାଦି କାର୍ଯ୍ୟରେ ସମୟ କଟାଏ ଏବଂ ପରଦିନ ସକାଳ ୭।୮ ଘଣ୍ଟା ପର୍ଯ୍ୟନ୍ତ ଶୋଇରହେ । କିନ୍ତୁ ସଂଯମୀ ଲୋକ ରାତି ଆଠ ବାଜିଲେ ଶୋଇପଡ଼େ ଏବଂ ପୁଣି ଅଧ ରାତିରେ ଉଠି ଈଶ୍ୱରଙ୍କର

ଧ୍ୟାନ କରେ (ଏହା ଅନ୍ତରକ ଅର୍ଥ ଅଟେ) ପୁଣି ଭୋଗୀମାନେ ସଂସାରର ପ୍ରପଞ୍ଚକୁ ବୃଦ୍ଧି କର (କର୍ମଫଳରେ ଆସକ୍ତ ହୋଇ) ଈଶ୍ୱରଙ୍କୁ ଭୁଲିଯାନ୍ତି । ସଂଯମୀ ପୁରୁଷ ସଂସାର ପ୍ରପଞ୍ଚରୁ ଅଲଗା ରହି (ଅନାସକ୍ତ ଭାବରେ କର୍ମ କରି ) ଈଶ୍ୱର ଦର୍ଶନ ଲାଭ କରନ୍ତି । ଏହି ଉଭୟ ମାର୍ଗ ପୃଥକ ଅଟେ ବୋଲି ଭଗବାନ ଏହି ଶ୍ଳୋକରେ ବୁଝାଇ ଅଛନ୍ତି ।

ନଦୀମାନଙ୍କ ପ୍ରବେଶଦ୍ୱାରା ପୂର୍ଣ୍ଣ ହେଉଥିଲେ ମଧ୍ୟ ସମୁଦ୍ର ଯେପରି ଅଚଳ ରହିଥାଏ, ସେହିପରି ଯେଉଁ ମନୁଷ୍ୟଠାରେ ସଂସାରର ଭୋଗ ବିଲୀନ ହୋଇ ଯାଇଅଛି ସେହି ଏକା ଶାନ୍ତି ଲାଭ କରେ । ବିଷୟାକାଙ୍କ୍ଷୀ ଲୋକ ସେହି ଶାନ୍ତି ପାଏ ନାହିଁ । ୭୦ ।

ଯେଉଁ ପୁରୁଷ ସମସ୍ତ କାମନା ଛାଡ଼ି ଏବଂ ଇଚ୍ଛା, ମମତା ଓ ଅହଙ୍କାର ଶୂନ୍ୟ ହୋଇ ବିଚରଣ କରେ ସେହି କେବଳ ଶାନ୍ତି ପାଏ । ୭୧ ।

ହେ ପାର୍ଥ, ଈଶ୍ୱର ଦର୍ଶନ କରିଥିବା ବ୍ୟକ୍ତିର ସ୍ଥିତି ଏହିଭଳି ଅଟେ । ଏହି ସ୍ଥିତିକୁ ଲାଭ କଲେ କେହି ଆଉ ମୋହରେ ପଡ଼ନ୍ତି ନାହିଁ । ମୃତ୍ୟୁ ସମୟରେ ମନୁଷ୍ୟ ଏପରି ସ୍ଥିର ସ୍ଥିତିରେ ରହି ପାରିଲେ ସେ ବ୍ରହ୍ମନିର୍ବାଣ ପ୍ରାପ୍ତ ହୁଏ । ୭୨ ।

ଓଁ ତତ୍‌ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତା ରୂପକ ଉପନିଷଦ୍ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦର ସାଂଖ୍ୟଯୋଗ ନାମକ ଦ୍ୱିତୀୟ ଅଧ୍ୟାୟର ସମାପ୍ତି ।

——୦——

( ୩ )

## କର୍ମଯୋଗ

ଏହି ଅଧ୍ୟାୟକୁ ଗୀତାର ସ୍ୱରୂପ ଜାଣିବାର କୁଞ୍ଚି ବୋଲି କହିଲେ ଚଳେ । ଏଥିରେ କର୍ମ କାହିଁକି ଓ କିପରି କରିବ, ଯଥାର୍ଥ କର୍ମ କାହାକୁ କହନ୍ତି, ଏ ସବୁ କଥା ସୁସ୍ପଷ୍ଟ କରି ଦିଆଯାଇଅଛି । ଫଳରେ ଜନହିଁ ପରମାର୍ଥିକ କର୍ମ ଅଟେ ଏହା ମଧ୍ୟ ବୁଝାଯାଇ ଅଛି ।

ଅର୍ଜୁନ କହିଲେ— ହେ ଜନାର୍ଦ୍ଦନ, ଆପଣଙ୍କ ମତରେ ଯଦ୍ୟପି କର୍ମ ଅପେକ୍ଷା ବୁଦ୍ଧି ଶ୍ରେଷ୍ଠ ବୋଲି ବିବେଚିତ ହୁଏ, ତାହାହେଲେ ହେ କେଶବ, ଘୋର କର୍ମରେ ଆପଣ ମୋତେ ପ୍ରବର୍ତ୍ତାଇବାର କାରଣ କ'ଣ ? । ୧ ।

ଟିପ୍ପଣୀ—ବୁଦ୍ଧି କହିଲେ ସମତ୍ୱ ବୁଦ୍ଧି ।

ଆପଣ ଜାଣନ୍ତୁ ଆପଣଙ୍କ ସନ୍ଦିଗ୍ଧ କଥା ମୋର ବୁଦ୍ଧିକୁ ଶଙ୍କାଗ୍ରସ୍ତ କରିଅଛି, ଅତଏବ ଆପଣ ଗୋଟିଏ କଥା ନିଶ୍ଚୟ କରି କୁହନ୍ତୁ ଯାହା ମୋର ହିତକାରକ ହେବ । ୨ ।

ଟିପ୍ପଣୀ—ଅର୍ଜୁନ ଗୋଳମାଳରେ ପଡ଼ି କିଛି ବୁଝି ପାରୁନାହାନ୍ତି । କାରଣ ଏକଦିଗରେ ଭଗବାନ ତାହାଙ୍କୁ ଶିଥିଳ ହେବାର ଦେଖି କର୍ମ କରିବାକୁ ଉତ୍ତେଜନା ଦେଲାବେଳକୁ ଅନ୍ୟ ଦିଗରେ ପୁଣି ଦ୍ୱିତୀୟ ଅଧ୍ୟାୟର ୪୯ । ୫୦ ଶ୍ଳୋକରୁ କର୍ମତ୍ୟାଗର ଆଭାସ ମିଳୁଅଛି । ତେଣୁ ଭଗବାନ କହୁଛନ୍ତି ଯେ ଟିକିଏ ଗମ୍ଭୀର ଚିନ୍ତାକରି ଦେଖିଲେ ଏପରି ଆଭାସର କୌଣସି ସୂଚନା ମିଳିବ ନାହିଁ ।

ଶ୍ରୀଭଗବାନ କହିଲେ—ହେ ପାପ ରହିତ ! ଏହି ସଂସାରରେ ଦୁଇଟି ଅବସ୍ଥା ଥିବାକଥା ମୁଁ ପୂର୍ବରୁ କହିଅଛି । ତନ୍ମଧ୍ୟରୁ ଗୋଟିଏ ସାଂଖ୍ୟମାନଙ୍କର ଜ୍ଞାନ ଯୋଗ, ଅନ୍ୟଟି ଯୋଗୀମାନଙ୍କ କର୍ମ ଯୋଗ ।୩।

କର୍ମ ଆରମ୍ଭ ନ କଲେ ନୈଷ୍କର୍ମ୍ୟ କଣ ତାହା ଅନୁଭବ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ, ଏବଂ କର୍ମକୁ ବାହ୍ୟତଃ ତ୍ୟାଗ କଲେ ମଧ୍ୟ ତଦ୍ଦ୍ୱାରା କେହି ମୋକ୍ଷଲାଭ କରି ନ ପାରେ । ୪ ।

ଟିପ୍ପଣୀ—ମନ, ବଚନ ଓ ଶରୀର ଦ୍ୱାରା କୌଣସି କର୍ମ ନ କରିବାର ଅର୍ଥ ନୈଷ୍କର୍ମ୍ୟ । କିନ୍ତୁ କର୍ମ ନକରି ଏପରି ନୈଷ୍କର୍ମ୍ୟର ଅନୁଭବ ଲାଭ କରି ହୁଏ ନାହିଁ । ଅତଏବ ଏହାର ( ନୈଷ୍କର୍ମ୍ୟର ) ଅନୁଭବ କପରି ପ୍ରାପ୍ତ ହୁଏ ତାହା ବର୍ତ୍ତମାନ ଦେଖିବାର କଥା ।

ବାସ୍ତବରେ କର୍ମ ନକରି କେହି କ୍ଷଣମାତ୍ର ରହି ନ ପାରନ୍ତି । ପ୍ରକୃତିଜାତ ଗୁଣ ତାହାର ପରବଶ ହୋଇଥିବା ପ୍ରତ୍ୟେକ ଲୋକକୁ କର୍ମ କରାଉଅଛି । ୫ ।

ଯେଉଁ ବ୍ୟକ୍ତି କର୍ମେନ୍ଦ୍ରିୟମାନଙ୍କୁ ଦମନ କରି ମନେ ମନେ ପ୍ରତ୍ୟେକ ଇନ୍ଦ୍ରିୟର ଭୋଗ୍ୟ ବିଷୟ ସବୁ ଚିନ୍ତାକରେ ତାହାକୁ ମିଥ୍ୟାଚାରୀ କୁହାଯାଏ । ୬ ।

ଟିପ୍ପଣୀ— ଯେପରି କେହି ମୁହଁରେ କିଛି ନକହି ମନେ ମନେ ଯଦି ଅନ୍ୟକୁ ଗାଳି ଦିଏ, ତେବେ ସେ ଧାର୍ମିକ ନୁହେଁ, ସେ ମିଥ୍ୟାଚାରୀ ଅଟେ । ଏଥିରୁ ଏପରି ଅର୍ଥ ବୁଝିବା ଉଚିତ ନୁହେଁ କି ଯେ ପର୍ଯ୍ୟନ୍ତ ମନ ବଶୀଭୂତ ହୋଇନାହିଁ ସେ ପର୍ଯ୍ୟନ୍ତ ଶାରୀରିକ କ୍ରିୟାକୁ ରୋକି ରଖିବା ନିରର୍ଥକ । ଶରୀରକୁ ନ ରୋକିଲେ ମନକୁ କେବେହେଁ ଆୟତ୍ତାଧୀନ କରି ହେବନାହିଁ । ଏହି ଶରୀର ( କର୍ମେନ୍ଦ୍ରିୟଗଣ ) କୁ ସଂଯମ କରିବା ସଙ୍ଗେ ସଙ୍ଗେ ମନକୁ ସଂଯମ ( ଆତ୍ମବଶ ) କରିବାକୁ ଚେଷ୍ଟାକରିବା ଅତ୍ୟନ୍ତ ଆବଶ୍ୟକ । ଭୟ ହେତୁ କିମ୍ବା ତାହାରର ଅନ୍ୟ କୌଣସି କାରଣ ହେତୁ ଯେଉଁମାନେ ଶରୀରକୁ ରୋକି ରଖନ୍ତି ମାତ୍ର ମନକୁ ରୋକି ପାରନ୍ତି ନାହିଁ, କେବଳ ତାହା ନୁହେଁ,

ମନଭିତରେ ମଧ୍ୟ ବିଷୟ ଭୋଗ କରିବାକୁ ଚିନ୍ତା କରୁଥାନ୍ତି ଏବଂ ସୁବିଧା ପାଇଲେ ଶରୀରଦ୍ୱାରା ତାହା ଉପଭୋଗ କରି ନିଅନ୍ତି, ସେହିପରି ମିଥ୍ୟାଚାରୀ ଅର୍ଥାତ୍ ଭଣ୍ଡମାନଙ୍କୁ ଏଠାରେ ନିନ୍ଦାକରା ଯାଇଅଛି । ଏହାର ପର ଶ୍ଳୋକରେ ଠିକ୍ ଏହାର ଓଲଟା ଭାବ ଦେଖାଇ ଦିଆ ଯାଇଅଛି ।

ହେ ଅର୍ଜୁନ, ଯେ ବ୍ୟକ୍ତି ଇନ୍ଦ୍ରିୟମାନଙ୍କୁ ମନ ମଧ୍ୟରେ ସଂଯମ କରି ଅନାସକ୍ତ ଭାବରେ କର୍ମେନ୍ଦ୍ରିୟମାନଙ୍କ ଦ୍ୱାରା କର୍ମଯୋଗ ଆରମ୍ଭ କରନ୍ତି ସେହି ବ୍ୟକ୍ତି ଶ୍ରେଷ୍ଠ ପୁରୁଷ ଅଟନ୍ତି ।

ଟିପ୍ପଣୀ—ଏଥିରେ ବାହାର ଭିତରର ମିଳନ ଦେଖାଇ ଦିଆଯାଇ ଅଛି । ମନକୁ ସଂଯମ କରି ରଖିଲେ ମଧ୍ୟ ମନୁଷ୍ୟ ଶରୀର ଅର୍ଥାତ୍ କର୍ମେନ୍ଦ୍ରିୟ ମାନଙ୍କ ଦ୍ୱାରା କିଛିନା କିଛି କର୍ମ ନିଶ୍ଚୟ ହିଁ କରିବ । କିନ୍ତୁ ଯାହାଙ୍କର ମନ ସଂଯତ ହୋଇଅଛି ତାହାଙ୍କର କର୍ଣ୍ଣ କଦାପି ଦୂଷିତ କଥା ଶୁଣିବାକୁ ଭଲ ପାଇବ ନାହିଁ । ତାହା ଈଶ୍ୱର ଭଜନ, ସତ୍ ପୁରୁଷ ମାନଙ୍କର ଗୁଣଗାନ ଶୁଣିବାକୁ ଭଲ ପାଇବ । ଯାହାର ମନ ଆତ୍ମବଶ ହୋଇଅଛି, ଆମ୍ଭେମାନେ ଯାହାକୁ ବିଷୟ ବିଳାସ କହୁଁ ତହିଁରେ ତାଙ୍କର ସ୍ପୃହା ନ ଥାଏ । ଏଭଳି ମନୁଷ୍ୟ ଯାହା ଆତ୍ମାର ମଙ୍ଗଳକାରକ ତାହା କରନ୍ତି । ଏହି ପ୍ରକାର କର୍ମ କରିବାକୁ କର୍ମମାର୍ଗ କୁହାଯାଏ । ଯାହାଦ୍ୱାରା ଆତ୍ମାକୁ ଶରୀର ବନ୍ଧନରୁ ମୁକ୍ତ କରା ଯାଇପାରେ ତାହାହିଁ "କର୍ମଯୋଗ" । ଏଥିରେ ବିଷୟାସକ୍ତିର ସ୍ଥାନ ରହି ନ ପାରେ ।

ଅତଏବ ତୁମ୍ଭେ ନିୟତ କର୍ମ କର । କର୍ମ ନକରିବା ଅପେକ୍ଷା କର୍ମ କରିବା ଅଧିକଗୁଣରେ ଶ୍ରେଷ୍ଠ । କାରଣ କର୍ମ ନକଲେ ତୁମ୍ଭର ଶରୀର ବ୍ୟାପାର ମଧ୍ୟ ନିର୍ବାହିତ ହୋଇପାରିବ ନାହିଁ ।

ଟିପ୍ପଣୀ—'ନିୟତ' ଶବ୍ଦ ମୂଳ ଶ୍ଳୋକରେ ଅଛି । ଏହାର ସମ୍ବନ୍ଧ ପୂର୍ବ ଶ୍ଳୋକ ସହିତ ରହିଅଛି । ସେହି ଶ୍ଳୋକରେ ମନ ଦ୍ୱାରା ଇନ୍ଦ୍ରିୟମାନଙ୍କୁ

ନିୟମିତ କରି ଏବଂ ସଙ୍ଗ ରହିତ ଅର୍ଥାତ୍ ଫଳାକାଂକ୍ଷୀ ନ ହୋଇ (ଅନାସକ୍ତ ଭାବରେ) କର୍ମ କରିବାକୁ ପ୍ରଶଂସା କରାଯାଇଛି । ତାହାହେଲେ ଏହି ଶ୍ଳୋକରେ ନିୟତ କର୍ମକୁ ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ନିୟମାବଦ୍ଧ ରଖି କର୍ତ୍ତବ୍ୟ କର୍ମକୁ ସମର୍ଥନ କରାଯାଇଅଛି ।

ଯଜ୍ଞ ନିମିତ୍ତ ଯେଉଁ କର୍ମ କରାଯାଏ, ତାହା ଭିନ୍ନ ଅନ୍ୟ କର୍ମ କଲେ ଇହଲୋକରେ ମନୁଷ୍ୟ (କର୍ମ) ବନ୍ଧନରେ ପଡେ । ଅତଏବ ହେ କୌନ୍ତେୟ, ତୁମ୍ଭେ ଫଳ ଆଶା ଛାଡ଼ି କର୍ମ କର । ୯ ।

ଟିପ୍ପଣୀ—ଯଜ୍ଞ କହିଲେ ପରୋପକାରାର୍ଥେ ଅଥବା ଈଶ୍ୱରାର୍ଥେ କୃତ କର୍ମ । ପ୍ରଜାପତି ବ୍ରହ୍ମା ଯଜ୍ଞ ସହିତ ପ୍ରଜାମାନଙ୍କୁ ସୃଷ୍ଟି କରି କହିଛନ୍ତି—ଏହି ଯଜ୍ଞଦ୍ୱାରା ତୁମ୍ଭେମାନେ ବୃଦ୍ଧି ପାଇବ, ଏହା ତୁମ୍ଭଙ୍କୁ ଅଭୀଷ୍ଟ ଫଳ ଦେବ । ୧୦ ।

ତୁମ୍ଭେମାନେ ଏହି ଯଜ୍ଞ ଦ୍ୱାରା ଦେବତାମାନଙ୍କୁ ପୋଷଣ କରିବ, ଦେବତାମାନେ ତୁମ୍ଭମାନଙ୍କୁ ପୋଷଣ କରନ୍ତୁ । ଏହିପରି ପରସ୍ପର ପରସ୍ପରକୁ ପୋଷଣକରି ତୁମ୍ଭେମାନେ ପରମ କଲ୍ୟାଣ ପ୍ରାପ୍ତ ହୁଅ । ୧୧ ।

ଯଜ୍ଞ ଦ୍ୱାରା ସନ୍ତୁଷ୍ଟ ହୋଇ ଦେବତାମାନେ ତୁମ୍ଭମାନଙ୍କୁ ତୁମ୍ଭମାନଙ୍କର ଅଭୀଷ୍ଟ ଫଳ ଦେବେ । କିନ୍ତୁ ସେମାନଙ୍କ ଦ୍ୱାରା ପ୍ରଦତ୍ତ ବସ୍ତୁ ପୁଣି ସେମାନଙ୍କୁ ନଦେଇ ଯେ ନିଜେ ଭୋଗକରେ ସେ ନିଶ୍ଚୟ ଚୋର । ୧୨ ।

ଟିପ୍ପଣୀ—ଏଠାରେ ଦେବତା କହିଲେ ଈଶ୍ୱର ସୃଷ୍ଟ "ପ୍ରାଣୀ ଜଗତ ।" ପ୍ରାଣୀ ଜଗତର ସେବା କରିବା ଦେବ-ସେବା ଏବଂ ତାହାହିଁ ଯଜ୍ଞ ।

ଯଜ୍ଞର ଅବଶିଷ୍ଟ ପଦାର୍ଥ ଯେଉଁମାନେ ଭକ୍ଷଣ କରନ୍ତି ସେମାନେ ସବୁ ପାପରୁ ମୁକ୍ତ ହୁଅନ୍ତି । ଯେଉଁମାନେ କେବଳ ଆପଣା ନିମିତ୍ତ ପାକ କରନ୍ତି ସେମାନେ ପାପ ଭକ୍ଷଣ କରନ୍ତି । ୧୩ ।

ପ୍ରାଣୀମାନେ ଅନ୍ନରୁ ଜାତ, ବୃଷ୍ଟିରୁ ଅନ୍ନ ଏବଂ ଯଜ୍ଞରୁ ବୃଷ୍ଟି ଜାତ ହୁଏ । ପୁଣି ଏହି ଯଜ୍ଞ କର୍ମରୁ ଜାତ ହୁଏ । ୧୪ ।

ପ୍ରକୃତିରୁ କର୍ମର ଉତ୍ପତ୍ତି ଏବଂ ଅକ୍ଷର ବ୍ରହ୍ମରୁ ପ୍ରକୃତିର ଉତ୍ପତ୍ତି । ଏହିପରି ସର୍ବବ୍ୟାପୀ ବ୍ରହ୍ମ ସର୍ବଦା ଯଜ୍ଞରେ ପ୍ରତିଷ୍ଠିତ ବୋଲି ତୁମ୍ଭେ ଜାଣ । ୧୫ ।

ଏ ପ୍ରକାର ପ୍ରବର୍ତ୍ତିତ କର୍ମଚକ୍ରକୁ ଯେ ଅନୁସରଣ ନ କରେ ସେ ନିଜ ଜୀବନକୁ ପାପରେ ଭାଗୀ କରାଏ; ଏବଂ କେବଳ ଇନ୍ଦ୍ରିୟ ସୁଖରେ ଡୁବି ରହେ । ହେ ପାର୍ଥ, ଏପରି ଲୋକ ବଞ୍ଚିବା ବୃଥା । ୧୬ ।

ଯାହାର କେବଳ ଆତ୍ମାରେ ପ୍ରୀତି, ଆତ୍ମାରେ ତୃପ୍ତି ଏବଂ ଆତ୍ମାରେ ସନ୍ତୋଷ ସେପରି ବ୍ୟକ୍ତିର ଆଉ କିଛି କରିବାକୁ ବାକି ନଥାଏ । ୧୭

କିଛି କରିବା ଓ ନ କରିବାରେ ତାଙ୍କର କିଛି ସ୍ୱାର୍ଥ ନାହିଁ । କୌଣସି ପ୍ରୟୋଜନ ସିଦ୍ଧି କରିବା ପାଇଁ ତାକୁ ମଧ୍ୟ ପ୍ରାଣୀମାନଙ୍କ ଉପରେ ନିର୍ଭର କରିବାକୁ ହୁଏନାହିଁ । ୧୮ ।

ଅତଏବ ତୁମ୍ଭେ ସଙ୍ଗରହିତ ହୋଇ ନିରନ୍ତର କର୍ତ୍ତବ୍ୟ କର୍ମ କର । କେବଳ ଅସକ୍ତ ଥାଇ କର୍ମ କରିବା ପୁରୁଷ ମୋକ୍ଷ ପାଆନ୍ତି ।୧୯।

ଜନକ ପ୍ରଭୃତି କର୍ମଦ୍ୱାରାହିଁ ପରମସିଦ୍ଧି ଲାଭ କରିଥିଲେ । ଲୋକ ଶିକ୍ଷା ପ୍ରତି ଦୃଷ୍ଟି ଦେଇ ମଧ୍ୟ ତୁମ୍ଭର କର୍ମ କରିବା ଉଚିତ ।୨୦।

ଉତ୍ତମ ପୁରୁଷମାନେ ଯେପରି ଆଚରଣ କରନ୍ତି ସାଧାରଣ ଲୋକେ ତାହାଙ୍କୁ ଅନୁକରଣ କରନ୍ତି । ସେମାନେ ଯାହା ଯଥାର୍ଥ ବୋଲି ପ୍ରମାଣ କରନ୍ତି ଇତର ଲୋକେ ତାହା ମାନି ଚଳନ୍ତି ।୨୧।

ହେ ପାର୍ଥ ! ତିନି ଲୋକରେ କିଛି କରିବାକୁ ମୋର ଆଉ ବାକି ନାହିଁ । ଯାହା ମୁଁ ପାଇବାର ତାହା ଯେ ନ ପାଇଅଛି ଏପରି ନୁହେଁ । ତଥାପି ମୁଁ କର୍ମ କରୁଅଛି । ୨୨ ।

ଟିପ୍ପଣୀ :—ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଆଦିର ନିରନ୍ତର ଓ ଅଶ୍ରାନ୍ତ ଗତି ଭଗବାନଙ୍କର କର୍ମର ପରିଚୟ ଦେଉଅଛି । ଏହି କର୍ମ ମାନସିକ ନୁହେଁ, କିନ୍ତୁ ଶାରୀରିକ ଅଟେ । ଈଶ୍ୱର ନିରାକାର ହୋଇ ଶାରୀରିକ କର୍ମ କିପରି କରନ୍ତି, ଏ ଭଳି ପ୍ରଶ୍ନ ତଥା ଆଶଙ୍କା କରିବାର ସ୍ଥାନ ନାହିଁ । କାରଣ ସେ ନିରାକାର ହେଲେ ମଧ୍ୟ ଶରୀରଧାରୀ ପରି କର୍ମ କରୁଥିବାର ଦେଖାଯାନ୍ତି । ଏହି କାରଣରୁ ସେ କର୍ମ କଲେ ମଧ୍ୟ ଅକର୍ମୀ ଓ ନିର୍ଲିପ୍ତ ଅଟନ୍ତି । ମନୁଷ୍ୟର ଏତିକି ବୁଝିବା ଉଚିତ ଯେ ଯେପରି ଈଶ୍ୱରଙ୍କର ପ୍ରତ୍ୟେକ ରଚନା ଯନ୍ତ୍ର ପରି କର୍ମ କରୁଛି ସେହିପରି ମନୁଷ୍ୟ ବୁଦ୍ଧି ସହିତ ନିୟମିତ ରୂପେ କର୍ମ କରିବା ଆବଶ୍ୟକ । ଯନ୍ତ୍ରର ଗତିକୁ ଅନାଦର କରି ମନ ଇଚ୍ଛା କାର୍ଯ୍ୟ କରିବାରେ ମନୁଷ୍ୟର ବିଶେଷତ୍ୱ ନ ଥାଏ। ବରଂ ସେହି ଗତିକୁ ଜ୍ଞାନ ପୂର୍ବକ ଅନୁକରଣ କରି ସେହିଭଳି କାର୍ଯ୍ୟ କରିବାରେ ତାହାର ବିଶେଷତ୍ୱ ରହିଅଛି । ନିର୍ଲିପ୍ତ ଭାବରେ ଅସକ୍ତ ଛଡ଼ ଯନ୍ତ୍ର ପରି ଯଦି ମନୁଷ୍ୟ କର୍ମ କରେ ତେବେ ଘୋରି ହୋଇ ସେ କ୍ଷୀଣ ହୋଇ ଯାଏନାହିଁ । ବରଂ ମରିବା ପର୍ଯ୍ୟନ୍ତ ସେ ସେହିଭଳି ନୂତନ ହୋଇ ରହିଥାଏ । ଦେହ ଦେହର ନିୟମାନୁସାରେ ନଷ୍ଟ ହୁଏ । କିନ୍ତୁ ଦେହ ଭିତରେ ଥିବା ଆତ୍ମା ଯେପରି ଥିଲା, ସେହିପରି ରହେ ।

ମୁଁ ଯଦି କେବେ ହେଲେ ଅଳସ ଭାଙ୍ଗିବାକୁ ଯେତିକି ସମୟ ଆବଶ୍ୟକ ତେତିକି ସମୟ କର୍ମରେ ପ୍ରବୃତ୍ତ ନ ରହେ ତେବେ ହେ ପାର୍ଥ ! ଲୋକେ ସବୁ ପ୍ରକାରେ ମୋର ଆଚରଣକୁ ଅନୁସରଣ କରିବାକୁ ବସିବେ । ୨୩ ।

ଯଦି ମୁଁ କର୍ମ ନ କରିବି; ତେବେ ଏହି ସଂସାର ଭ୍ରଷ୍ଟ ହୋଇଯିବ । ମୁଁ ଅବ୍ୟବସ୍ଥାର ସୃଷ୍ଟିକର୍ତ୍ତା ହୋଇ ଏହି ସଂସାର ନାଶ କରିବି । ୨୪ ।

ହେ ଭରତ, ଯେପରି ଅଜ୍ଞାନ ଲୋକମାନେ ଆସକ୍ତ ହୋଇ କର୍ମ କରନ୍ତି ଠିକ୍ ସେହି ଭାବରେ କେବଳ ଲୋକ କଲ୍ୟାଣ ନିମିତ୍ତ ଜ୍ଞାନୀମାନେ ଆସକ୍ତିଶୂନ୍ୟ ହୋଇ କର୍ମ କରିବା ଉଚିତ । ୨୫ ।

କର୍ମରେ ଆସକ୍ତ ଥିବା ଅଜ୍ଞାନ ଲୋକଙ୍କର ବୁଦ୍ଧିକୁ କୌଣସି ପ୍ରକାରେ ବିଚଳିତ କରିବା ଜ୍ଞାନୀ ପୁରୁଷଙ୍କର ଉଚିତ ନୁହେଁ । ଅନାସକ୍ତ ଭାବରେ ସେମାନେ ଏକଳ ସାଥିରେ କର୍ମ କରିବେ । ତାଙ୍କର ସେହି କର୍ମାଚରଣ ଅଜ୍ଞ ଲୋକଙ୍କ ଭିତରେ କର୍ମ ପ୍ରେରଣା ସୃଷ୍ଟି କରିବ । ୨୬ ।

ପ୍ରକୃତିର ଗୁଣଦ୍ୱାରା ସମସ୍ତ କର୍ମ ଅନୁଷ୍ଠିତ ହେଉଅଛି । ମାତ୍ର ଅହଂକାର ଦ୍ୱାରା ମୋହିତ ଅଜ୍ଞାନ ଲୋକ "ମୁଁ ଏହା କଲି" ବୋଲି ଭାବି ନିଜକୁ କର୍ତ୍ତା ମନେକରେ । ୨୭ ।

ହେ ମହାବାହୋ, ଗୁଣ ଓ କର୍ମ ବିଭାଗର ରହସ୍ୟକୁ ଜାଣିଥିବା ବ୍ୟକ୍ତି 'ଗୁଣ ଗୁଣରେ ପ୍ରବୃତ୍ତ' ଅର୍ଥାତ୍ ପ୍ରକୃତିର ଗୁଣରାଶି ଇନ୍ଦ୍ରିୟମାନଙ୍କ ଦ୍ୱାରା ରୂପ ରସାଦି କାର୍ଯ୍ୟ ସାଧନ କରେ ଏହା ଜାଣି ତହିଁରେ ଆସକ୍ତ ହୁଏ ନାହିଁ । ୨୮ ।

ଟିପ୍ପଣୀ—ଯେପରି ଶ୍ୱାସ ପ୍ରଶ୍ୱାସ ଆଦି କ୍ରିୟା ଆପେ ଆପେ ହୁଏ । ତହିଁରେ ମନୁଷ୍ୟ ଆସକ୍ତ ନ ଥାଏ, ମାତ୍ର ସେହି ଅଙ୍ଗରେ କିଛି ପୀଡ଼ା

ହେଲେ ମନୁଷ୍ୟ ତାହାର ଚିନ୍ତାକରେ, ଅର୍ଥାତ୍ ସେ ଅଙ୍ଗ ଅଛି ବୋଲି ତାହାର ଜ୍ଞାନ ହୁଏ, ସେହିପରି ଯଦି ସ୍ୱାଭାବିକ କର୍ମ ତା ମନକୁ ଆପେ ଆପେ ହୁଏ ତେବେ ତହିଁରେ ଲୋକ ଅସକ୍ତ ହୁଏ ନାହିଁ । ଯାହାର ସ୍ୱଭାବ ଉଦାର ସେ ତାହାର ଉଦାର ସ୍ୱଭାବକୁ ଜାଣି ନଥାଏ, ତଥାପି ଦାନ ନ କରି ସେ ରହିପାରେ ନାହିଁ । ଏଭଳି ଅନାସକ୍ତି ଅଭ୍ୟାସ ଈଶ୍ୱର ଅନୁଗ୍ରହରୁ ଆସିଥାଏ ।

ପ୍ରକୃତିର ଗୁଣରାଶିରେ ମୋହିତ ହୋଇଥିବା ଲୋକେ ଗୁଣମାନଙ୍କ କାର୍ଯ୍ୟରେ ଆସକ୍ତ ହୁଅନ୍ତି । ଏହି ଅଜ୍ଞାନ ମନ୍ଦବୁଦ୍ଧି ଲୋକମାନଙ୍କୁ ବିଚଳିତ କରିବା ଜ୍ଞାନୀ ଜନର ଉଚିତ ନୁହେଁ । ୨୯ ।

ଅଧ୍ୟାତ୍ମବୃତ୍ତି ରଖି ସବୁ କର୍ମ ମୋଠାରେ ସମର୍ପଣ କରି ଆସକ୍ତି ଓ ମମତା ଛାଡ଼ି ତୁମ୍ଭେ ଯୁଦ୍ଧ କର । ୩୦ ।

ଟିପ୍ପଣୀ:—ଯେ ବ୍ୟକ୍ତି ଶରୀରସ୍ଥ ଆତ୍ମାକୁ ଜାଣିଅଛି ଏବଂ ତାହାକୁ ପରମାତ୍ମାଙ୍କର ଅଂଶ ବୋଲି ବୁଝିଅଛି, ସେ ପରମାତ୍ମାଙ୍କ ଠାରେ ସମସ୍ତ ଅର୍ପଣ କରେ, ଯେପରି ସେବକ ତାହାର ପ୍ରଭୁର ଆଶ୍ରୟରେ ଚଳି ସବୁ କାର୍ଯ୍ୟ ସେ ତାହାର ପ୍ରଭୁ ପାଇଁ କରେ ।

ଯେ ଶ୍ରଦ୍ଧାବାନ୍ ପୁରୁଷ ଦ୍ୱେଷ ରହିତ ହୋଇ ମୋର ଏହି ମତ ଅନୁସାରେ ଚଳନ୍ତି ସେ କର୍ମ ବନ୍ଧନରୁ ମୁକ୍ତି ପାଇଯା'ନ୍ତି । ୩୧ ।

ଯେଉଁମାନେ ମୋର ଏହି ଅଭିପ୍ରାୟର କେବଳ ଦୋଷ ଦେଖନ୍ତି ଓ ତାହାକୁ ଅନୁସରଣ କରନ୍ତି ନାହିଁ, ସେମାନେ ଜ୍ଞାନ ହୀନ ଏବଂ ମୂର୍ଖ । ସେମାନେ ନଷ୍ଟ ହୋଇ ଅଛନ୍ତି ବୋଲି ଜାଣିବ । ୩୨ ।

ଜ୍ଞାନୀ ପୁରୁଷ ମଧ୍ୟ ନିଜର ସ୍ୱଭାବ ଅନୁସାରେ ଚଳନ୍ତି । ପ୍ରାଣୀମାନେ ସମସ୍ତେ ନିଜ ନିଜର ସ୍ୱଭାବ ଅନୁସାରେ ଆଚରଣ କରନ୍ତି । ଏପରି ଅବସ୍ଥାରେ ବଳାତ୍କାର ଦ୍ୱାରା କଣ ହେବ ? ୩୩ ।

ଟିପ୍ପଣୀ—ଏହି ଶ୍ଲୋକ ଦ୍ୱିତୀୟ ଅଧ୍ୟାୟର ୬୨ ରୁ ୬୮ ଶ୍ଲୋକ ମାନଙ୍କର ଅର୍ଥର ବିରୋଧ ନୁହେଁ । ଇନ୍ଦ୍ରିୟ ନିଗ୍ରହ କରୁ କରୁ ହିଁ ଏତ ମନୁଷ୍ୟର ଆୟୁ ବଢିଯାଇ ପାରେ । କିନ୍ତୁ ତହିଁରେ ଯଦି ସଫଳତା ନ ମିଳେ ତାହାହେଲେ ନିଗ୍ରହ ଅର୍ଥାତ୍ ବଳାତ୍କାର କରିବା ନିରର୍ଥକ । ଏଥିରେ ନିଗ୍ରହ ଅଭ୍ୟାସ କରିବାକୁ ନିନ୍ଦା କରିଯାଇ ନାହିଁ । ମାତ୍ର ସ୍ୱଭାବ ଉପରେ ରାଜତ୍ୱ କରେ ତାହାହିଁ କୁହା ହୋଇଅଛି । ଏଟା ମୋର ସ୍ୱଭାବ ଏପରି କହି ମନ୍ଦ ଅଭ୍ୟାସ ଧରି ଯଦି କେହି ବସିରହେ ତାହାହେଲେ ସେ ଏହି ଶ୍ଲୋକର ଅର୍ଥ ବୁଝି ନାହିଁ ବୋଲି କହିବାକୁ ହେବ । ସ୍ୱଭାବ କଣ ତାହା ଆମ୍ଭମାନଙ୍କୁ ଜଣାପଡ଼େ ନାହିଁ । ଅଭ୍ୟାସ ସବୁ ସ୍ୱଭାବ ନୁହେଁ । ଆତ୍ମାର ସ୍ୱଭାବ ଊର୍ଦ୍ଧ୍ୱକୁ ଗତି କରିବା । ସୁତରାଂ ଆତ୍ମାର ଗତି ତଳକୁ ହେଲେ ତାହାର ବିରୋଧ କରିବା ମନୁଷ୍ୟର କର୍ତ୍ତବ୍ୟ । ଏହି ହେତୁ ତଳ ଶ୍ଲୋକ ଏହାକୁ ସ୍ପଷ୍ଟ କରୁଅଛି ।

ଇନ୍ଦ୍ରିୟମାନଙ୍କର ନିଜ ନିଜ ବିଷୟମାନଙ୍କରେ ପ୍ରୀତି ଓ ଦ୍ୱେଷଭାବ ଥାଏ । ମନୁଷ୍ୟ ସେମାନଙ୍କର ବଶ ହେବା ଉଚିତ ନୁହେଁ । କାରଣ ସେ ସବୁ ମନୁଷ୍ୟର ପଥର କଣ୍ଟକ ତୁଲ୍ୟ । ୩୪ ।

ଟିପ୍ପଣୀ—କାନର ବିଷୟ ଶୁଣିବା, ଯାହା ଭଲ ଶୁଣାଯାଏ ତାହା ଶୁଣିବାକୁ ଇଚ୍ଛା ଧାବିତ ହୁଏ, ଏହା 'ପ୍ରୀତି' ଏବଂ ଯାହା ଶୁଣିବାକୁ ଭଲ ନ ଲାଗେ ତାହା ଶୁଣିବାକୁ ଅନିଚ୍ଛା ଅର୍ଥ 'ଦ୍ୱେଷ' ଏହା ସ୍ୱଭାବ ଅଟେ । ଏପରି କହି ରାଗ ଦ୍ୱେଷର ବଶୀଭୂତ ନ ହୋଇ ବରଂ ତହିଁର ବିରୋଧ କରିବା ଉଚିତ । ସୁଖ ଦୁଃଖରୁ ଅଲଗା ରହିବା ଆତ୍ମାର ସ୍ୱଭାବ । ଏହି ସ୍ୱଭାବରେ ମନୁଷ୍ୟକୁ ପହଞ୍ଚିବାକୁ ହେବ ।

ପରଧର୍ମ ସୁଲଭ ହେଲେ ମଧ୍ୟ ତାହାଠାରୁ ନିଜ ଧର୍ମ ଯେତେ ଦୁଃଖପ୍ରଦ ହେଉ ପଛକେ ତାହା ଅଧିକ ଶ୍ରେୟ । ସ୍ୱଧର୍ମରେ ବରଂ ମୃତ୍ୟୁ ଭଲ କିନ୍ତୁ ପର ଧର୍ମ ଭୟାନକ ଅଟେ । ୩୫ ।

ଟିପ୍ପଣୀ—ସମାଜରେ ଜଣକର ଧର୍ମ ଝାଡୁ ଦେବାର ହେଲେ ଅନ୍ୟ ଜଣକର ଧର୍ମ ହିସାବ ରଖିବା ହୋଇଥାଏ । ହିସାବ ରଖିବା ଲୋକକୁ ସମସ୍ତେ ଉତ୍ତମ କହି ପାରନ୍ତି, କିନ୍ତୁ ସେଥିପାଇଁ ଝାଡୁ ଦେଉଥିବା ଲୋକ ଯଦି ତାର ନିଜ ଧର୍ମ ଛାଡ଼ିଦିଏ, ତେବେ ସେ ଧର୍ମଭ୍ରଷ୍ଟ ହୁଏ, ଏବଂ ତଦ୍ୱାରା ମଧ୍ୟ ସମାଜର ଅନିଷ୍ଟ ହୁଏ । ପ୍ରତ୍ୟେକଙ୍କର ସେବାର ମୂଲ୍ୟ ପ୍ରତ୍ୟେକଙ୍କର ନିଷ୍ଠାନୁସାରେ ଈଶ୍ୱର ନିରୂପଣ କରନ୍ତି । ସେଠାରେ ପ୍ରତ୍ୟେକ କାର୍ଯ୍ୟର ମୂଲ୍ୟ ସମାନ । ଦୁହେଁ ଈଶ୍ୱରାର୍ପଣ ବୁଦ୍ଧି ରଖି ନିଜ ନିଜର ସେବା କାର୍ଯ୍ୟ ପାଳନ କଲେ ଦୁହେଁ ସମାନ ଭାବରେ ମୋକ୍ଷର ଅଧିକାରୀ ହୋଇ ପାରିବେ ।

ଅର୍ଜୁନ କହିଲେ—ହେ ବାର୍ଷ୍ଣେୟ ! ମନେକର ବଳପୂର୍ବକ ଟାଣି ନେଲାପରି ମନୁଷ୍ୟର ଇଚ୍ଛା ନଥିଲେ ମଧ୍ୟ ସେ ଏପରି କାହାର ପ୍ରେରଣାରେ ପାପ କରେ ?

ଶ୍ରୀ ଭଗବାନ କହିଲେ—ରଜୋଗୁଣରୁ ଉତ୍ପନ୍ନ ଏହି କାମ, କ୍ରୋଧ ଏପରି କରନ୍ତି । ଏମାନଙ୍କର ଉଦର କେବେହେଁ ପୂର୍ଣ୍ଣ ହୁଏ ନାହିଁ । ଏମାନେ ମହାପାପ । ଏମାନଙ୍କୁ ଇହଲୋକରେ ମହାଶତ୍ରୁ ବୋଲି ଜାଣ । ୩୭ ।

ଟିପ୍ପଣୀ—ମନୁଷ୍ୟର ପ୍ରକୃତ ଶତ୍ରୁ ତାହାର ଅନ୍ତରରେ ଅଛି । ସେମାନଙ୍କୁ କାମ କୁହ, କ୍ରୋଧ କୁହ । ଇତ୍ୟାଦି ।

ଯେପରି ଧୂଆଁ, ନିଆଁ, ଧୂଳି ଦ୍ୱାରା ଦର୍ପଣ ଏବଂ ଚର୍ମ ଦ୍ୱାରା ଗର୍ଭ ଆବୃତ ଥାଏ ସେହିପରି କାମାଦି ରୂପକ ଶତ୍ରୁଦ୍ୱାରା ଏହି ଜ୍ଞାନ ଢାଙ୍କି ହୋଇ ରହିଅଛି । ୩୮ ।

ସଦା ଅତୃପ୍ତ ଏହି କାମରୂପୀ ଅଗ୍ନି ନିତ୍ୟ ଶତ୍ରୁ ଅଟେ । ତଦ୍ୱାରା ଜ୍ଞାନୀମାନଙ୍କର ଜ୍ଞାନ ଢାଙ୍କିହୋଇ ରହିଥାଏ । ୩୯ ।

ଇନ୍ଦ୍ରିୟ, ମନ ଓ ବୁଦ୍ଧି ଏହି ଶତ୍ରୁର ନିବାସ ସ୍ଥଳ । ଏହି ଶତ୍ରୁ ଏମାନଙ୍କ ଦ୍ୱାରା ଜ୍ଞାନକୁ ଢାଙ୍କି ରଖି ଦେହଧାରୀକୁ ମୂର୍ଚ୍ଛିତ କରାଏ ।୪୦।

ଟିପ୍ପଣୀ—ଇନ୍ଦ୍ରିୟମାନଙ୍କ ମଧ୍ୟରେ ଭାବ ସଞ୍ଚାରିତ ହୋଇ ମନ ମଳିନ ହୁଏ, ତେଣୁ ବିବେକ ଶକ୍ତିର ହ୍ରାସ ହୁଏ ଏବଂ ଜ୍ଞାନ ମଧ୍ୟ ଲୋପ ପାଏ । (୨ୟ ଅ, ୬୨—୬୪ ଶ୍ଳୋକ ଦେଖ)

ହେ ଭରତର୍ଷଭ ! ଏଣୁ ତୁମ୍ଭେ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ଦମନ କରି ଜ୍ଞାନ ଓ ଅନୁଭବକୁ ନାଶ କରୁଥିବା ଏହି ପାପୀକୁ ତ୍ୟାଗ କର । ୪୧ ।

ଇନ୍ଦ୍ରିୟଗଣ ସୂକ୍ଷ୍ମ, ସେମାନଙ୍କଠାରୁ ମନ ଅଧିକ ସୂକ୍ଷ୍ମ, ମନଠାରୁ ବୁଦ୍ଧି ଅଧିକ ସୂକ୍ଷ୍ମ, ଏବଂ ଏହି ବୁଦ୍ଧିଠାରୁ ପୁଣି ଯେ ଅଧିକ ସୂକ୍ଷ୍ମ ତାହା ଆତ୍ମା ଅଟନ୍ତି । ୪୨ ।

ଟିପ୍ପଣୀ—ଅତଏବ ଇନ୍ଦ୍ରିୟମାନେ ବଶୀଭୂତ ହେଲେ ସୂକ୍ଷ୍ମରୂପୀ କାମକୁ ଜିଣିବା ଅତି ସହଜ ହୁଏ ।

ଏହିପରି ବୁଦ୍ଧିଠାରୁ ଶ୍ରେଷ୍ଠ ଆତ୍ମାକୁ ଚିହ୍ନି ଏବଂ ଆତ୍ମାଦ୍ୱାରା ମନକୁ ବଶ କରି ହେ ମହାବାହୋ, କାମରୂପକ ଦୁର୍ଜ୍ଜୟ ଶତ୍ରୁକୁ ସଂହାର କର । ୪୩ ।

ଟିପ୍ପଣୀ—ଯେଉଁ ମନୁଷ୍ୟ ଦେହ ସ୍ଥିତ ଆତ୍ମାକୁ ଜାଣେ, ମନ ତାହାର ବଶୀଭୂତ ହୁଏ, ଇନ୍ଦ୍ରିୟମାନଙ୍କ ବଶରେ ଆଉ ରହେ ନାହିଁ । ମନକୁ ଜୟ କଲେ କାମ କ'ଣ କରିପାରେ ?

ଓଁ ତତ୍ ସତ୍ ।

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପୀ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗ ଶାସ୍ତ୍ରର ଶ୍ରୀକୃଷ୍ଣାର୍ଜୁନ ସମ୍ବାଦର କର୍ମଯୋଗ ନାମକ ତୃତୀୟ ଅଧ୍ୟାୟର ସମାପ୍ତି ।

—— ——

( ୪ )

# ଜ୍ଞାନ କର୍ମ ସନ୍ନ୍ୟାସ ଯୋଗ

ଏହି ଅଧ୍ୟାୟରେ ତୃତୀୟ ଅଧ୍ୟାୟର ବିସ୍ତୃତ ଆଲୋଚନା କରାଯାଇଅଛି ଏବଂ ଭିନ୍ନ ଭିନ୍ନ ପ୍ରକାର କେତେକ ଯଜ୍ଞକୁ ମଧ୍ୟ ବର୍ଣ୍ଣନା କରାଯାଇଅଛି ।

ଶ୍ରୀ ଭଗବାନ୍ କହିଲେ—ଏହି ଅବିନାଶୀ ଯୋଗ ମୁଁ ବିବସ୍ୱାନଙ୍କୁ କହିଥିଲି । ବିବସ୍ୱାନ ( ସୂର୍ଯ୍ୟ ) ମନୁଙ୍କୁ ଏବଂ ମନୁ ଇକ୍ଷ୍ୱାକୁଙ୍କୁ କହିଥିଲେ । ୧ ।

ରାଜର୍ଷିମାନେ ଏହିପରି ପୁରୁଷାନୁକ୍ରମେ ଏହାକୁ ଜାଣୁଥିଲେ । କାଳକ୍ରମେ ସେହି ଯୋଗ ଲୋପ ପାଇଅଛି । । ୨ ।

ସେହି ପୁରାତନ ଯୋଗ ଆଜ ମୁଁ ପୁଣି ତୁମ୍ଭଙ୍କୁ କହୁଅଛି, କାରଣ ତୁମ୍ଭେ ମୋର ଭକ୍ତ ଓ ସଖା; ଆହୁରି ମଧ୍ୟ ଏହା ଏକ ଅତି ଉତ୍ତମ ମର୍ମ କଥା ଅଟେ । ୩ ।

ଅର୍ଜୁନ କହିଲେ—ଆପଣଙ୍କ ଜନ୍ମ ଏବେ ଏବଂ ବିବସ୍ୱାନଙ୍କ ଜନ୍ମ ପୂର୍ବରୁ ହୋଇଅଛି । ଏପରି ଅବସ୍ଥାରେ ଏହାକୁ ପ୍ରଥମେ ଆପଣ କହିଥିଲେ ବୋଲି ମୁଁ କିପରି ଜାଣିବି ? । ୪ ।

ଶ୍ରୀ ଭଗବାନ କହିଲେ—ହେ ଅର୍ଜୁନ, ତୁମ୍ଭର ଓ ମୋର ବହୁତ ଜନ୍ମ ବିତି ଗଲାଣି । ତାହା ସବୁ ମୁଁ ଜାଣେ, କିନ୍ତୁ ତୁମ୍ଭେ ତାହା ଜାଣ ନାହିଁ । ୫ ।

ମୋର ଜନ୍ମ ନାହିଁ, କିମ୍ବା ମରଣ ନାହିଁ, ମୁଁ ପ୍ରାଣୀମାନଙ୍କର ଈଶ୍ୱର, ତଥାପି ମୁଁ ମୋର ସ୍ୱଭାବର ବଶବର୍ତ୍ତୀ ହୋଇ ନିଜ ମାୟାରେ ଜନ୍ମ ହୁଏ । ୬ ।

ହେ ଭାରତ, ଯେତେବେଳେ ଧର୍ମର ଗ୍ଲାନି ହୁଏ ଏବଂ ଅଧର୍ମ ପ୍ରବଳ ହୁଏ ସେତେବେଳେ ମୁଁ ଜନ୍ମଗ୍ରହଣ କରେ । ୭ ।

ସାଧୁ ପୁରୁଷମାନଙ୍କ ରକ୍ଷା ଓ ଦୁଷ୍ଟଜନମାନଙ୍କ ବିନାଶ ତଥା ଧର୍ମର ପୁନରୁଦ୍ଧାର କରିବାପାଇଁ ମୁଁ ଯୁଗେ ଯୁଗେ ଜନ୍ମଗ୍ରହଣ କରେ । ୮ ।

ଟିପ୍ପଣୀ—ଏଥିରେ ଶ୍ରଦ୍ଧାବାନ୍ ବ୍ୟକ୍ତିର ଆଶ୍ୱାସନା ଏବଂ ସତ୍ୟ ତଥା ଧର୍ମ ଯେ ଅବିଚଳିତ ତାହାର ପ୍ରତିଜ୍ଞା ରହିଅଛି । ଏହି ଜଗତରେ ଜୁଆର ଏବଂ ଭଟ୍ଟା ଲାଗି ରହିଅଛି । କିନ୍ତୁ ଶେଷରେ ଧର୍ମରହିଁ ଜୟ ହୁଏ । ସତ୍ୟର ବିନାଶ ନାହିଁ, ତେଣୁ ସାଧୁର ନାଶ ହୁଏ ନାହିଁ । ଅସତ୍ୟର ଅସ୍ତିତ୍ୱ ନାହିଁ ତେଣୁ ଦୁଷ୍ଟର ବିନାଶ ହୁଏ । ଏହା ଜାଣି କର୍ତ୍ତୃତ୍ୱର ଅଭିମାନ ରଖି ମନୁଷ୍ୟ ହିଂସା କରିବା କିମ୍ବା ଦୁରାଗ୍ରହୀ ହେବା ମଧ୍ୟ ଉଚିତ ନୁହେଁ । ଈଶ୍ୱରଙ୍କର ଗହନ ମାୟା ନିଜର କାର୍ଯ୍ୟ କରି ଯାଉଅଛି । ଏହାହିଁ ଅବତାର ଅଥବା ଈଶ୍ୱରଙ୍କର ଜନ୍ମ । ସ୍ୱରୂପତଃ ଈଶ୍ୱରଙ୍କର ଜନ୍ମ ବୋଲି କିଛି ନାହିଁ ।

ମୋର ଦିବ୍ୟ ଜନ୍ମ ଓ କର୍ମର ରହସ୍ୟ ଏହିପରି ଅଟେ । ଏହାକୁ ଜାଣିଥିବା ଲୋକ ହେ ଅର୍ଜୁନ, ମୃତ୍ୟୁପରେ ଆଉ ଜନ୍ମଗ୍ରହଣ ନ କରି ମୋତେ ପ୍ରାପ୍ତ ହୁଅନ୍ତି । ୯ ।

ଟିପ୍ପଣୀ—କାରଣ ଈଶ୍ୱର କେବଳ ସତ୍ୟର ଜୟ କରନ୍ତି । ଏପରି ବିଶ୍ୱାସ ମନୁଷ୍ୟର ଦୃଢ଼ ହୋଇଗଲେ, ସେ ଆଉ ସତ୍ୟକୁ କଦାପି ଛାଡେ ନାହିଁ । ତେଣୁ ଧୀର ଭାବରେ ଦୁଃଖ ସହ୍ୟ କରେ ଏବଂ ମମତା ରହିତ ହେବା ହେତୁରୁ ଜନ୍ମମରଣରୂପକ ଚକ୍ରରୁ ମୁକ୍ତ ହୋଇ ଈଶ୍ୱରଙ୍କ ଠାରେ ଧ୍ୟାନମଗ୍ନ ରହେ ଏବଂ ତାହାଙ୍କ ଠାରେ ଲୟ ପ୍ରାପ୍ତ ହୁଏ ।

ପ୍ରୀତି, ଭୟ ଓ କ୍ରୋଧକୁ ଛାଡ଼ି ମୋ'ଠାରେ ଧ୍ୟାନ ରଖି, ମୋହର ଆଶ୍ରୟ ଗ୍ରହଣ କରି ଏବଂ ଜ୍ଞାନରୂପୀ ତପଦ୍ୱାରା ପବିତ୍ରତା ଲାଭ କରିଥିବା ଅନେକ ବ୍ୟକ୍ତି ମୋର ସ୍ୱରୂପକୁ ଲାଭ କରିଅଛନ୍ତି । ୧୦ ।

ଯେ ଯେପରି ଭାବରେ ମୋର ଆଶ୍ରୟ ଗ୍ରହଣ କରେ ମୁଁ ତାହାକୁ ସେହି ପ୍ରକାର ଫଳ ଦେଇଥାଏ । ଯେ କୌଣସି ପ୍ରକାରେ ହେଲେ ହେ ପାର୍ଥ, ମନୁଷ୍ୟ ମୋର ମାର୍ଗକୁ ଅନୁସରଣ କରୁଅଛି, ଅର୍ଥାତ୍ ମୋର ଶାସନାଧୀନ ହୋଇ ରହିଅଛି । ୧୧ ।

ଟିପ୍ପଣି—ଅର୍ଥାତ୍ ଈଶ୍ୱରଙ୍କ ନିୟମକୁ କେହି ଭଙ୍ଗ କରି ପାରେ ନାହିଁ, ଯାହା ବୁଣିବ, ତାହା କାଟିବ, ଯେପରି କରିବ ସେପରି ପାଇବ; ଈଶ୍ୱରଙ୍କ ନିୟମରେ ତଥା କର୍ମର ନିୟମରେ କିଛି ଅପବାଦ ନାହିଁ । ସମସ୍ତେ ସମାନ ପରିମାଣରେ ଅର୍ଥାତ୍ ନିଜର ଯୋଗ୍ୟତା ଅନୁସାରେ ନ୍ୟାୟ ପା'ନ୍ତି ।

କର୍ମଫଳରେ ଆଶା ରଖି ମନୁଷ୍ୟ ଇହ ସଂସାରରେ ଦେବତାମାନଙ୍କୁ ପୂଜା କରେ । ଏହି ହେତୁରୁ ସେ ତାହାର କର୍ମଫଳ ଅତିଶୀଘ୍ର ଏହି ମନୁଷ୍ୟ ଲୋକରେ ପାଇଥାଏ । ୧୨ ।

ଟିପ୍ପଣୀ—ଦେବତା କହିଲେ ସ୍ୱର୍ଗବାସୀ ଇନ୍ଦ୍ର ବରୁଣାଦି ବ୍ୟକ୍ତି-ବିଶେଷଙ୍କୁ ବୁଝାଏ ନାହିଁ । ଦେବତା କହିଲେ ଈଶ୍ୱରଙ୍କର ଅଂଶରୂପକ ଶକ୍ତି, ଏହି ଅର୍ଥରେ ମନୁଷ୍ୟ ମଧ୍ୟ ଦେବତା । ବାଷ୍ପ, ବିଦ୍ୟୁତ୍ ଆଦି ମହାନ୍ ଶକ୍ତିମାନେ ଦେବତା । ସେମାନଙ୍କୁ ଆରାଧନା କଲେ ଇହ-ସଂସାରରେ ଅତିଶୀଘ୍ର ଫଳ ମିଳୁଥିବାର ଆମ୍ଭେମାନେ ପ୍ରତ୍ୟକ୍ଷରେ ଦେଖୁଅଛୁଁ । କିନ୍ତୁ ସେହି ଫଳ କ୍ଷଣିକ । ତାହା ଆତ୍ମାକୁ ସନ୍ତୋଷ ଦେଇ ନ ପାରିବା ସ୍ଥଳେ ମୋକ୍ଷ ଦେବାକୁ ସମର୍ଥ ହେବ କିପରି ?

ଗୁଣ ଓ କର୍ମର ବିଭାଗ ଅନୁସାରେ ମୁଁ ଚାତୁର୍ବର୍ଣ୍ଣ ସୃଷ୍ଟି କରିଅଛି । ମୁଁ ତାହାର କର୍ତ୍ତା ହେଲେ ମଧ୍ୟ ତୁମ୍ଭେ ମୋତେ ଅବିନାଶୀ ଅକର୍ତ୍ତା ବୋଲି ଜାଣିବ । ୧୩ ।

କର୍ମ ମୋତେ ସ୍ପର୍ଶ କରେ ନାହିଁ । କର୍ମ ଫଳରେ ମୋର ସ୍ପୃହା ନ ଥାଏ । ଏହିପରି ଉତ୍ତମ ରୂପେ ମୋତେ ଯେ ଜାଣନ୍ତି ସେ କର୍ମ ଦ୍ୱାରା ବାନ୍ଧି ହୁଅନ୍ତି ନାହିଁ । ୧୪ ।

ଟିପ୍ପଣୀ:—କାରଣ କର୍ମ କରି ମଧ୍ୟ ଅକର୍ମୀ ହୋଇ ରହିବାର ସର୍ବୋତ୍କୃଷ୍ଟ ଆଦର୍ଶ ମନୁଷ୍ୟ ସମ୍ମୁଖରେ ଅଛି । ସମସ୍ତ କର୍ମର କର୍ତ୍ତା ଈଶ୍ୱର । ଆମ୍ଭେମାନେ କେବଳ ନିମିତ୍ତ ମାତ୍ର । ଏପରି ଜ୍ଞାନ ଜନ୍ମିଲେ କର୍ତ୍ତୃତ୍ୱର ଅଭିମାନ ଆଉ କିପରି ହୋଇପାରେ ?

ଏହା ଜାଣି ପୂର୍ବେ ମୁମୁକ୍ଷୁ ବ୍ୟକ୍ତିଗଣ କର୍ମ କରିଅଛନ୍ତି । ଅତଏବ ସେହି ପୂର୍ବ ପୁରୁଷମାନେ ଯେଉଁପରି ସର୍ବଦା କରି ଆସି ଅଛନ୍ତି ତୁମ୍ଭେ ସେହିପରି କର । ୧୫ ।

କର୍ମ କଣ ଏବଂ ଅକର୍ମ କଣ, ଏ ବିଷୟରେ ବଡ ବଡ଼ ଜ୍ଞାନୀମାନଙ୍କର ଭ୍ରମ ହୋଇଅଛି । ତେଣୁ ମୁଁ ତୁମ୍ଭକୁ ସେହି କର୍ମ ବିଷୟ ଉତ୍ତମ ରୂପେ କହିବି । ତାହା ଜାଣିଲେ ତୁମ୍ଭେ ଅଶୁଭରୁ ରକ୍ଷା ପାଇବ । ୧୬ ।

କର୍ମ, ବିଷିଦ୍ଧ କର୍ମ ଓ ଅକର୍ମ ମଧ୍ୟରେ ପ୍ରଭେଦ କଣ ତାହା ଜାଣିବା ଉଚିତ । କାରଣ କର୍ମର ଗତି ଅତ୍ୟନ୍ତ ଗୂଢ଼ ଅଟେ ।୧୭।

କର୍ମ ମଧ୍ୟରେ ଅକର୍ମ ଏବଂ ଅକର୍ମ ମଧ୍ୟରେ କର୍ମ ଯାହାକୁ ଦେଖା ଯାଏ, ମନୁଷ୍ୟ ମଧ୍ୟରେ ସେହି ବୁଦ୍ଧିମାନ । ସେହି ସମ୍ପୂର୍ଣ୍ଣ ଯୋଗୀ ଏବଂ ସେହି ପୂର୍ଣ୍ଣ କର୍ମୀ । ୧୮ ।

ଟିପଣୀ:—କର୍ମ କଲେ ମଧ୍ୟ ଯେ କର୍ତ୍ତୃତ୍ୱର ଅଭିମାନ ରଖେ ନାହିଁ ତାହାର କର୍ମ ଅକର୍ମ । ଯେ କର୍ମକୁ ବାହ୍ୟତଃ ତ୍ୟାଗ କରି ମନେ ମନେ କର୍ମର ଅଟ୍ଟାଳିକା ନିର୍ମାଣ କରେ ତାହାର ଅକର୍ମ ମଧ୍ୟ କର୍ମ ଅଟେ । ପକ୍ଷାଘାତ ହୋଇଥିବା ଲୋକ ଇଚ୍ଛା କରି—ଅଭିମାନ ପୂର୍ବକ ଅଚଳ ଅଙ୍ଗକୁ ହଲାଇଲେ ସେହି ଅଙ୍ଗ ହଲେ । ରୋଗଗ୍ରସ୍ତ ଅଙ୍ଗଟି ଏହି ହଲିବା କ୍ରିୟାର କର୍ତ୍ତା ହେଲା; କିନ୍ତୁ ଆତ୍ମାର ଗୁଣ "ଅକର୍ତ୍ତା" । ଯେ ମୋହ ବଶତଃ ନିଜକୁ କର୍ତ୍ତା ବୋଲି ମନେ କରେ, ବୁଝିବାକୁ ହେବ ଯେପରି କି ତାହାର ଆତ୍ମାକୁ ପକ୍ଷାଘାତ ହୋଇଅଛି ଏବଂ ସେ କେବଳ ଅଭିମାନରେ କର୍ମ କରୁଅଛି । ଏହିପରି ଭାବରେ ଯେ କର୍ମର ଗତି ଜାଣନ୍ତି ତାହାଙ୍କୁ ବୁଦ୍ଧିମାନ, ଯୋଗୀ ଏବଂ କର୍ତ୍ତବ୍ୟପରାୟଣ ବ୍ୟକ୍ତି କୁହାଯାଏ । ମୁଁ କରୁଛି ଏପରି ଭାବିବା ଲୋକେ କର୍ମ ଅକର୍ମ ଭେଦ ଭୁଲି ଯାନ୍ତି ଏବଂ ସାଧନର ଭଲ ମନ୍ଦ ବିଚାର କରନ୍ତି ନାହିଁ । ଆତ୍ମାର ସ୍ୱାଭାବିକ ଗତି ଊର୍ଦ୍ଧ୍ୱକୁ । ସୁତରାଂ ମନୁଷ୍ୟ ନୀତିମାର୍ଗ ଛାଡ଼ିଲେ ତାହା ଭିତରେ ଅହଂଭାବ ନିଶ୍ଚୟ ଅଛି ବୋଲି ବୁଝିବାକୁ ହେବ । କାରଣ ଅଭିମାନ ଶୂନ୍ୟ ପୁରୁଷର କର୍ମ ସହଜେ ସାତ୍ତ୍ୱିକ ହୋଇଥାଏ ।

ଯାହାଙ୍କର ସର୍ବପ୍ରକାର ଉଦ୍‌ଯୋଗ କାମନା ଓ ସଂକଳ୍ପ ଶୂନ୍ୟ ସେ କର୍ମକୁ ଜ୍ଞାନରୂପ ଅଗ୍ନିରେ ଦଗ୍ଧ କରି ଅଛନ୍ତି । ଏପରି ପୁରୁଷଙ୍କୁ ଜ୍ଞାନୀ ମାନେ ପଣ୍ଡିତ ବୋଲି କହନ୍ତି । ୧୯ ।

ଯେ କର୍ମଫଳକୁ ତ୍ୟାଗ କରିଅଛନ୍ତି ସେ ସର୍ବଦା ସନ୍ତୁଷ୍ଟ ଏବଂ ଯେ କାହାର ଆଶ୍ରୟକୁ ଅପେକ୍ଷା କରନ୍ତି ନାହିଁ କର୍ମରେ ବୁଡ଼ି ରହିଲେ ମଧ୍ୟ ସେ କିଛି କରନ୍ତି ନାହିଁ ବୋଲି ବୁଝିବାକୁ ହେବ । ୨୦ ।

ଟିପ୍ପଣୀ:—ଅର୍ଥାତ୍ ତାହାଙ୍କୁ କର୍ମ ବନ୍ଧନ ଭୋଗିବାକୁ ହୁଏ ନାହିଁ ।

ଯେ ଆଶାରହିତ, ଯାହାଙ୍କର ମନ ନିଜର ବଶୀଭୂତ, ଯେ ସର୍ବସଂଗ୍ରହ

ପରିତ୍ୟାଗ କରିଛନ୍ତି ଏବଂ ଯାହାଙ୍କ ଶରୀର କେବଳ କର୍ମ କରେ ସେ କର୍ମ କଲେ ମଧ ତାଙ୍କୁ ଦୋଷ ସ୍ପର୍ଶ କରେ ନାହିଁ । ୨୧ ।

ଟିପ୍ପଣୀ—ଅଭିମାନପୂର୍ବକ କରୁଥିବା କର୍ମ, ଯେତେ ସାତ୍ତ୍ୱିକ ହେଲେ ମଧ ବନ୍ଧନରେ ପକାଏ । ଈଶ୍ୱରାର୍ପଣ ବୁଦ୍ଧିରେ ଅଭିମାନଶୂନ୍ୟ ହୋଇ ସେହି କର୍ମ କଲେ ତାହା ବନ୍ଧନରହିତ ହୁଏ । ଯାହାଠାରେ ମୁଁ ଭାବ ଏକାବେଳକେ ଶୂନ୍ୟ, ତାହାର କେବଳ ଶରୀର କର୍ମ କରେ । ଶୋଇଥିବା ମନୁଷ୍ୟର କେବଳ ଶରୀର କାମ କରୁଛି ବୋଲି କୁହାଯାଇ ପାରେ । ଯେଉଁ କଏଦୀ ବନ୍ଦୀଶାଳାରେ ଏବଂ ନିଜର ଅନିଚ୍ଛା ସତ୍ତ୍ୱେ କର୍ମ କରିବାକୁ ବାଧ୍ୟ ହୁଏ, ତାହାର କେବଳ ଶରୀର କାର୍ଯ୍ୟ କରେ । ସେହିପରି ଯେ ନିଜର ଇଚ୍ଛାନୁସାରେ ଈଶ୍ୱରଙ୍କର କଏଦୀ ହୁଏ ତାହାର କେବଳ ଶରୀର କର୍ମ କରେ । ସେଠାରେ ତାହାର ନିଜତ୍ୱ ନ ଥାଏ । ଈଶ୍ୱର କର୍ମପ୍ରେରକ ଅଟନ୍ତି ।

ଯେ ବ୍ୟକ୍ତି ଯାହା ମିଳିଲା ତହିଁରେ ସନ୍ତୁଷ୍ଟ, ଯେ ସୁଖ ଦୁଃଖାଦି ଦ୍ୱନ୍ଦ୍ୱରୁ ମୁକ୍ତ, ଯେ ଦ୍ୱେଷରହିତ ଏବଂ କର୍ମର ସଫଳତା ଓ ନିଷ୍ଫଳତା ବିଷୟରେ ଯେ ସମଭାବାପନ୍ନ ସେହି ବ୍ୟକ୍ତି କର୍ମ କଲେ ମଧ କର୍ମ ବନ୍ଧନରେ ପଡ଼ନ୍ତି ନାହିଁ । ୨୨ ।

ଯେ ଆସକ୍ତିଶୂନ୍ୟ, ଯାହାଙ୍କ ଚିତ୍ତ ଜ୍ଞାନମଗ୍ନ, ଯେ ମୁକ୍ତ ଏବଂ ଯେ କେବଳ ଯଜ୍ଞ ନିମିତ୍ତ କର୍ମ କରନ୍ତି ତାହାଙ୍କର ସମସ୍ତ କର୍ମ ଲୟପ୍ରାପ୍ତ ହୁଏ । ୨୩ ।

ଯଜ୍ଞରେ ଅର୍ପଣ ଏହା ମଧ ବ୍ରହ୍ମ, ହବନ ବସ୍ତୁ ହବି ମଧ ବ୍ରହ୍ମ, ବ୍ରହ୍ମରୂପୀ ଅଗ୍ନିରେ ହବନ କରିବା ପୁରୁଷ ମଧ ବ୍ରହ୍ମ । ଏହି ପ୍ରକାର କର୍ମ ସହିତ ବ୍ରହ୍ମଙ୍କୁ ଯେ ମିଳନ କରି ପାରିଛନ୍ତି କେବଳ ସେ ବ୍ରହ୍ମଙ୍କୁ ପାନ୍ତି । ୨୪ ।

ଅନ୍ୟ କେତେକ ଯୋଗୀ ଦେବତା ପୂଜାଦ୍ୱାରା ଯଜ୍ଞ କରନ୍ତି, ଅଥଚ ଅନେକେ ବ୍ରହ୍ମରୂପୀ ଅଗ୍ନିରେ ଯଜ୍ଞଦ୍ୱାରା କେବଳ ଯଜ୍ଞକୁ ହୋମ କରନ୍ତି । ୨୫ ।

ଅପର କେହି କେହି ଶ୍ରବଣାଦି ଇନ୍ଦ୍ରିୟମାନଙ୍କର ସଂଯମ ରୂପକ ଯଜ୍ଞ କରନ୍ତି । ଅନ୍ୟ କେତେକ ଶବ୍ଦାଦି ବିଷୟକୁ ଇନ୍ଦ୍ରିୟାଗ୍ନିରେ ହୋମ କରନ୍ତି । ୨୬ ।

ଟିପ୍ପଣୀ—ଶୁଣିବା କାର୍ଯ୍ୟ ଇତ୍ୟାଦିକୁ ସଂଯମ କରିବା ଏକ କଥା ଏବଂ ଇନ୍ଦ୍ରିୟମାନଙ୍କୁ ବ୍ୟବହାର କରି ତଦନୁକୂଳ ପଦାର୍ଥ ସମୂହକୁ ଈଶ୍ୱରଙ୍କର ପ୍ରୀତିନିମିତ୍ତ ପ୍ରୟୋଗ କରିବା ଅନ୍ୟ ଏକ କଥା । ଯଥା— ଭଜନ ପ୍ରଭୃତି ଶୁଣିବା । ବାସ୍ତବରେ ଏହି ଉଭୟ କ୍ରିୟାରେ କୌଣସି ପ୍ରଭେଦ ନାହିଁ ।

ଅନ୍ୟାନ୍ୟ କେହି କେହି ଜ୍ଞାନାଲୋକ ଦ୍ୱାରା ପ୍ରଜ୍ୱଳିତ ହୋଇଥିବା ଆତ୍ମସଂଯମରୂପୀ ଯୋଗାଗ୍ନିରେ ଇନ୍ଦ୍ରିୟକର୍ମ ଓ ପ୍ରାଣକର୍ମ ସମୂହକୁ ହୋମ କରନ୍ତି । ୨୭ ।

ଟିପ୍ପଣୀ—ଅର୍ଥାତ୍ ପରମାତ୍ମାଙ୍କ ଠାରେ ତନ୍ମୟ ହୋଇଯାନ୍ତି ।

ଏହିପରି ଭାବରେ କେହି ଯଜ୍ଞ ନିମିତ୍ତ ଦ୍ରବ୍ୟ ଅର୍ପଣ କରନ୍ତି, କେହି ତପ ଆଚରଣ କରନ୍ତି । କେତେକ ଅଷ୍ଟାଙ୍ଗ ଯୋଗ ସାଧନ କରନ୍ତି; କେତେକ ସ୍ୱାଧ୍ୟାୟ ଓ ଜ୍ଞାନଯଜ୍ଞ କରନ୍ତି । ଏମାନେ ସମସ୍ତେ କଠିନ ବ୍ରତଧାରୀ, ପ୍ରଯତ୍ନଶୀଳ ଯାଜ୍ଞିକ ଅଟନ୍ତି । ୨୮ ।

ଅନ୍ୟ କେତେକ ପ୍ରାଣାୟାମରେ ତତ୍ପର ରହି ଅପାନବାୟୁଦ୍ୱାରା ପ୍ରାଣବାୟୁକୁ ହୋମ କରନ୍ତି, ଏବଂ ପ୍ରାଣବାୟୁଦ୍ୱାରା ପୁଣି ଅପାନକୁ ହୋମ କରନ୍ତି । ଅଥବା ପ୍ରାଣ ଅପାନ ଉଭୟକୁ ଅବରୋଧ କରନ୍ତି । ୨୯ ।

ଟିପ୍ପଣୀ—ଏହିପରି ଭିନ୍ନ ପ୍ରକାରର ପ୍ରାଣାୟାମ ଅଛି । ସଂସ୍କୃତରେ ଯାହାକୁ ପ୍ରାଣବାୟୁ ବୁଝାଯାଏ ଗୁଜରାଟି ଭାଷାରେ ତାହାର ଅର୍ଥ ଠିକ ଓଲଟା । ଭିତରୁ ବାହାରକୁ ବାହାରୁଥିବା ବାୟୁକୁ ପ୍ରାଣବାୟୁ କହନ୍ତି । ଆମ୍ଭେମାନେ ଯାହାକୁ ବାହାରୁ ଭିତରକୁ ନେଉଁ ତାହାକୁ ପ୍ରାଣବାୟୁ ଅର୍ଥାତ୍ ଅକ୍‌ସିଜେନ୍ ନାମରେ ଜାଣୁ ।

ଅପର କେତେକ ଆହାରକୁ ସଂଯମ କରି ପ୍ରାଣକୁ ପ୍ରାଣରେ ହୋମ କରନ୍ତି । ଯେ ବ୍ୟକ୍ତି ଯଜ୍ଞଦ୍ୱାରା ନିଜର ପାପକୁ କ୍ଷୟ କରି ପାରିଛନ୍ତି ସେ ଏହି ପ୍ରକାର ଯଜ୍ଞମାନଙ୍କୁ ଜାଣନ୍ତି । ୩୦ ।

ହେ କୁରୁସତ୍ତମ, ଯଜ୍ଞରୁ ବଞ୍ଚିଥିବା ଅମୃତକୁ ଯେ ଭୋଜନ କରନ୍ତି ସେ ସନାତନ ବ୍ରହ୍ମ ଲାଭ କରନ୍ତି । ଯଜ୍ଞ ନ କରୁଥିବା ଲୋକର ଇହଲୋକରେ ସ୍ଥାନ ନାହିଁ । ପରଲୋକରେ ବା ସ୍ଥାନ ହେବ କିପରି ? । ୩୧ ।

ଏହିପରି ବହୁ ପ୍ରକାରର ଯଜ୍ଞର ବିଷୟ ବେଦରେ ବର୍ଣ୍ଣିତ ହୋଇଅଛି । ସେ ସବୁ କର୍ମରୁ ଉତ୍ପନ୍ନ ବୋଲି ତୁମ୍ଭେ ଜାଣ । ଏହିପରି ଭାବରେ ସମସ୍ତ ଜାଣି ତୁମ୍ଭେ ମୋକ୍ଷଲାଭ କରିବ । ୩୨ ।

ଟିପ୍ପଣୀ—ଏଠାରେ କର୍ମର ବ୍ୟାପକ ଅର୍ଥ ଅଛି । ଅର୍ଥାତ୍ କର୍ମ କହିଲେ ଏଠାରେ ଶାରୀରିକ, ମାନସିକ ଏବଂ ଆତ୍ମିକ ଅର୍ଥକୁ ବୁଝାଏ । ଏପରି କର୍ମ ଯଜ୍ଞବିନା ହୁଏ ନାହିଁ । ଯଜ୍ଞବିନା ମଧ୍ୟ ମୋକ୍ଷ ମିଳେ ନାହିଁ । ଏହାକୁ ଜାଣି ପାରିବା ଏବଂ ତଦନୁସାରେ ଆଚରଣ କରିବା ଅର୍ଥ ଯଜ୍ଞକୁ ଜାଣିବା । ସାରକଥା ଏହି ଯେ ମନୁଷ୍ୟ ନିଜର ଶରୀର, ବୁଦ୍ଧି ଓ ଆତ୍ମାକୁ ଈଶ୍ୱରଙ୍କର ସେବା ତଥା ଲୋକସେବା ନିମିତ୍ତ ବ୍ୟବହାର ନ କଲେ ସେ ଚୋର ବୋଲି ବିବେଚିତ ହୁଏ, ଏବଂ ସେ ମୋକ୍ଷ ପାଇବାକୁ ଉପଯୁକ୍ତ ହୁଏ ନାହିଁ । ଯେ କେବଳ ବୁଦ୍ଧିଶକ୍ତିକୁ ସେବାରେ ଲଗାଏ,

ଶରୀର ତଥା ଅତ୍ମାକୁ ଶ୍ରେଷ୍ଠ କରେ ସେ ପୂର୍ଣ୍ଣଯାଜ୍ଞିକ ନୁହେଁ । ଏହି ସବୁ ଶକ୍ତି ମିଳିତ ନ ହେଲେ ପରୋପକାରପାଇଁ ମନୁଷ୍ୟ ଉପଯୋଗୀ ହୋଇ ପାରେ ନାହିଁ । ଅତଏବ ଆତ୍ମଶୁଦ୍ଧି ନ କଲେ ଲୋକ ସେବା କରିବା ଅସମ୍ଭବ । ଶରୀର, ବୁଦ୍ଧି ଏବଂ ଆତ୍ମା ଏହି ତିନି ଗୋଟିକୁ ସମଭାବରେ ବିକାଶ କରିବା ସେବକର କର୍ତ୍ତବ୍ୟ ।

ହେ ପରନ୍ତପ, ଦ୍ରବ୍ୟଯଜ୍ଞ ଅପେକ୍ଷା ଜ୍ଞାନ ଯଜ୍ଞ ବହୁତ ଶ୍ରେଷ୍ଠ, କାରଣ ହେ ପାର୍ଥ, ସମସ୍ତକର୍ମ ଜ୍ଞାନରେ ପର୍ଯ୍ୟବସିତ ହୋଇଅଛି । ୩୩ ।

ଟିପ୍ପଣୀ—ପରୋପକାର ବୁଦ୍ଧିରେ ଦେବାଦ୍ରବ୍ୟକୁ ବୁଝି ସମୁଝି ଦିଆ ନଗଲେ ଅନେକ ସମୟରେ ତାହା ବଡ଼ ଅନିଷ୍ଟକର ହୁଏ । ଏହା କିଏ ନ ଜାଣେ ? ଉତ୍ତମ ଉଦ୍ଦେଶ୍ୟବିଶିଷ୍ଟ କର୍ମରେ ଜ୍ଞାନ ସଂଯୁକ୍ତ ହେଲେ ତାହା ଶୋଭା ପାଏ । ଏଥିପାଇଁ ସମସ୍ତ କର୍ମର ପୂର୍ଣ୍ଣାହୁତି ଜ୍ଞାନରେ ପରିସମାପ୍ତ ହୁଏ ।

ଅତଏବ ତତ୍ତ୍ୱଜ୍ଞ ଜ୍ଞାନୀ ଜନମାନଙ୍କର ସେବା କର ଏବଂ ନମ୍ରଭାବରେ ବିବେକ ପାଖରେ ବାରମ୍ବାର ପ୍ରଶ୍ନ ପଚାରି ତୁମ୍ଭେ ଏହି ଜ୍ଞାନ ଲାଭ କର । ସେମାନେ ତୁମ୍ଭର ଜିଜ୍ଞାସାକୁ ତୃପ୍ତ କରିବେ । ୩୪ ।

ଟିପ୍ପଣୀ—ପ୍ରଣିପାତ, ପରିପ୍ରଶ୍ନ ଓ ସେବା ଜ୍ଞାନ ପ୍ରାପ୍ତିର ଏହି ତିନୋଟି ସର୍ତ୍ତକୁ ଆଧୁନିକ ଯୁଗରେ ଅତ୍ୟନ୍ତ ଧ୍ୟାନ ରଖିବା ଉଚିତ । ପ୍ରଣିପାତ ଅର୍ଥାତ୍ ନମ୍ରତା ଓ ଭବ୍ୟତା, ପରିପ୍ରଶ୍ନ ଅର୍ଥାତ୍ ବାରମ୍ବାର ପ୍ରଶ୍ନ କରିବା । ସେବା ଭାବ ନ ଥାଇ ନମ୍ରତା ଖୁସାମଦ୍‌ରେ ପରିଣତ ହୁଏ । ପୁଣି ଅନ୍ୱେଷଣ ନ କଲେ ଜ୍ଞାନ ମିଳିବା ସମ୍ଭବପର ନୁହେଁ । ଅତଏବ ଯେ ପର୍ଯ୍ୟନ୍ତ ବୁଝି ନ ପାରିଛ ସେ ପର୍ଯ୍ୟନ୍ତ ଅତି ନମ୍ରଭାବରେ ଗୁରୁଙ୍କୁ ପ୍ରଶ୍ନ ପଚାରୁଥିବା ଦରକାର । ଏହାହିଁ ଜିଜ୍ଞାସାର ଲକ୍ଷଣ । ଏଥିରେ ଶ୍ରଦ୍ଧାଭାବ ମୂଳ ଅଟେ । ଯାହା ପ୍ରତି ଶ୍ରଦ୍ଧା ନ ଥାଏ ତା ପ୍ରତି ଅନ୍ତରିକ

ନମ୍ରତା ଅସେ ନାହିଁ । ସୁତରାଂ ତା' ପ୍ରତି ସେବା ଭାବ ଅଉ କୁଆଡ଼ୁ ଆସିବ ?

ଏହି ଜ୍ଞାନ ଲାଭ କଲେ ହେ ପାଣ୍ଡବ, ତୁମ୍ଭର ଏପରି ମୋହ ଆଉ ରହିବ ନାହିଁ । ସେହି ଜ୍ଞାନ ବଳରେ ତୁମ୍ଭେ ସକଳ ପଦାର୍ଥକୁ ନିଜ ଭିତରେ ଏବଂ ମୋ ଭିତରେ ଦେଖି ପାରିବ । ୩.୫ ।

ଟିପ୍ପଣୀ—"ଯଥା ପିଣ୍ଡେ ତଥା ବ୍ରହ୍ମାଣ୍ଡେ" ଏହାହିଁ ଅର୍ଥ ଅଟେ । ଯେ ଆତ୍ମଦର୍ଶନ ଲାଭ କରି ଅଛନ୍ତି, ସେ ନିଜର ଆତ୍ମା ଓ ପରର ଆତ୍ମା ମଧ୍ୟରେ କିଛି ପ୍ରଭେଦ ଦେଖି ପାରନ୍ତି ନାହିଁ ।

ତୁମ୍ଭେ ପାପୀମାନଙ୍କ ମଧ୍ୟରେ ସବୁଠାରୁ ଅଧିକ ପାପୀ ହେଲେ ମଧ୍ୟ ଜ୍ଞାନରୂପକ ନୌକାଦ୍ୱାରା ସବୁ ପାପକୁ ପାର ହୋଇଯିବ । ୩୬ ।

ହେ ଅର୍ଜୁନ, ଯେପରି ପ୍ରଜ୍ଜ୍ୱଳିତ ଅଗ୍ନି କାଷ୍ଠକୁ ଭସ୍ମ କରିଦଏ ସେହିପରି ଜ୍ଞାନରୂପୀ ଅଗ୍ନି ସମସ୍ତ କର୍ମକୁ ଭସ୍ମ କରିଦଏ ।୩୭।

ଏ ସଂସାରରେ ଜ୍ଞାନପରି ପବିତ୍ର ଆଉ କିଛି ନାହିଁ । ଯୋଗ ଓ ସମତ୍ୱରେ ପୂର୍ଣ୍ଣତା ଲାଭ କରିଥିବା ପୁରୁଷ ଯଥା ସମୟରେ ନିଜ ନିଜ ଭିତରେ ସେହି ଜ୍ଞାନକୁ ଲାଭ କରନ୍ତି । ୩୮ ।

ଶ୍ରଦ୍ଧାବାନ୍, ଈଶ୍ୱରପରାୟଣ ଓ ଜିତେନ୍ଦ୍ରିୟ ପୁରୁଷ ଜ୍ଞାନ ଲାଭ କରନ୍ତି ଏବଂ ଜ୍ଞାନଲାଭ କରି ଶୀଘ୍ର ପରମ ଶାନ୍ତି ପାନ୍ତି । ୩୯ ।

ମାତ୍ର ଯାହାର ଜ୍ଞାନ ନାହିଁ କିମ୍ବା ଶ୍ରଦ୍ଧା ନାହିଁ, ଯେ ସଂଶୟଗ୍ରସ୍ତ, ସେପରି ଲୋକ ନଷ୍ଟ ହୋଇଯାଏ । ସଂଶୟାତ୍ମକ ଲୋକର ଇହଲୋକ କିମ୍ବା ପରଲୋକ କୌଣସିଠାରେ ସୁଖ ନାହିଁ । ୪୦ ।

ଯେ ବ୍ୟକ୍ତି ସମତ୍ୱରୂପକ ଯୋଗଦ୍ୱାରା କର୍ମକୁ ଅର୍ଥାତ୍ କର୍ମଫଳକୁ ତ୍ୟାଗ କରିଅଛନ୍ତି, ଏବଂ ଜ୍ଞାନଦ୍ୱାରା ସଂଶୟକୁ ଛେଦନ କରିଛନ୍ତି,

ସେପରି ଆତ୍ମଦର୍ଶୀ ପୁରୁଷଙ୍କୁ ହେ ଧନଞ୍ଜୟ ! କର୍ମ ଆଉ ବନ୍ଧନରେ ପକାଏ ନାହିଁ । ୪୧ ।

ଅତଏବ ହେ ଭାରତ, ଅଜ୍ଞାନରୁ ଉତ୍ପନ୍ନ ସଂଶୟକୁ ଆତ୍ମଜ୍ଞାନରୂପୀ ଖଡ୍ଗଦ୍ୱାରା ନାଶକରି ଯୋଗ ତଥା ସମତ୍ୱ ଧାରଣ କରି ଦଣ୍ଡାୟମାନ ହୁଅ । ୪୨ ।

ଓଁ ତତ୍ସତ୍

ଏହିପରି ଶ୍ରୀମଦ୍ଭଗବଦ୍ଗୀତାରୂପୀ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦର ଜ୍ଞାନ କର୍ମ ସନ୍ନ୍ୟାସ ଯୋଗ ନାମକ ଚତୁର୍ଥ ଅଧ୍ୟାୟର ସମାପ୍ତି ।

---

## ( ୫ )

## କର୍ମସନ୍ନ୍ୟାସ ଯୋଗ ।

କର୍ମଯୋଗ ବିନା କର୍ମସନ୍ନ୍ୟାସ ହୁଏ ନାହିଁ ଏବଂ ବାସ୍ତବରେ ଉଭୟ ଏକ ବସ୍ତୁ ଅଟେ । ଏହା ଏହି ଅଧ୍ୟାୟରେ କୁହା ହୋଇଅଛି ।

ଅର୍ଜ୍ଜୁନ କହିଲେ—ହେ କୃଷ୍ଣ, କର୍ମତ୍ୟାଗକୁ ଏବଂ ପୁଣି କର୍ମଯୋଗକୁ ତୁମ୍ଭେ ପ୍ରଶଂସା କରୁଅଛ । ଏହି ଉଭୟ ମଧ୍ୟରୁ ଯେଉଁଟି ଶ୍ରେୟସ୍କର ତାହା ତୁମ୍ଭେ ଯଥାର୍ଥ ଭାବରେ ନିଶ୍ଚୟ କରି କୁହ । ୧ ।

ଶ୍ରୀ ଭଗବାନ କହିଲେ—କର୍ମର ତ୍ୟାଗ ଏବଂ ଯୋଗ ଉଭୟ ମୋକ୍ଷପ୍ରଦ । ତନ୍ମଧ୍ୟରେ କର୍ମ-ସନ୍ନ୍ୟାସ ଅପେକ୍ଷା କର୍ମଯୋଗ ଉତ୍କୃଷ୍ଟ । ୨ ।

ଯେ ଦ୍ୱେଷ କରନ୍ତି ନାହିଁ କିମ୍ବା କାମନା ରଖନ୍ତି ନାହିଁ ତାହାଙ୍କୁ ନିତ୍ୟ ସନ୍ନ୍ୟାସୀ ବୋଲି ଜାଣିବ । ଯେ ସୁଖ ଦୁଃଖାଦି ଦ୍ୱନ୍ଦ୍ୱରୁ ମୁକ୍ତ, ସେ ସହଜରେ ବନ୍ଧନରୁ ମୁକ୍ତି ଲାଭ କରନ୍ତି । ୩ ।

ଟିପ୍ପଣୀ—ତାତ୍ପର୍ଯ୍ୟ ଏହି ଯେ କର୍ମତ୍ୟାଗ ସନ୍ନ୍ୟାସର ଯଥାର୍ଥ ଲକ୍ଷଣ ନୁହେଁ ବରଂ ଦ୍ୱନ୍ଦ୍ୱାତୀତ ହେବା ଯଥାର୍ଥ ଲକ୍ଷଣ । ମନୁଷ୍ୟ କର୍ମ କରି ସନ୍ନ୍ୟାସୀ ହୋଇପାରେ, ମାତ୍ର କର୍ମ ନ କଲେ ମିଥ୍ୟାଚାରୀ ବୋଲାଏ । ( ତୃତୀୟ ଅଧ୍ୟାୟ ଷଷ୍ଠ ଶ୍ଳୋକ ଦେଖ )

ସାଂଖ୍ୟ ଏବଂ ଯୋଗ ଅର୍ଥାତ୍ ଜ୍ଞାନ ଓ କର୍ମ, ଏ ଦୁହେଁ ପୃଥକ୍ ବୋଲି ଅଜ୍ଞାନଲୋକେ କହନ୍ତି; କିନ୍ତୁ ଜ୍ଞାନୀମାନେ ତାହା କହନ୍ତି ନାହିଁ । ଏ ଦୁଇଟିରୁ କୌଣସି ଗୋଟିକରେ ନିଷ୍ଠାଳ ରହିପାରିଲେ ଉଭୟର ଫଳ ଲବ୍ଧ ହୁଏ । ୪ ।

ଟିପ୍ପଣୀ—ଜ୍ଞାନଯୋଗୀ ଲୋକ ସଂଗ୍ରହବୃତ୍ତୀ କର୍ମ ଯୋଗର ବିଶେଷ ଫଳ 'ସଂକଳ୍ପ' କେବଳ ପ୍ରାପ୍ତ ହୁଅନ୍ତି । କର୍ମଯୋଗୀ ନିଜର ଅନାସକ୍ତ ଭାବ ହେତୁ ବାହ୍ୟ କର୍ମ କରୁଥିଲେ ମଧ୍ୟ ଜ୍ଞାନଯୋଗୀଙ୍କର ଶାନ୍ତି ଅନାୟାସରେ ଭୋଗ କରନ୍ତି ।

ଯେଉଁ ସ୍ଥାନ ସାଂଖ୍ୟମାନଙ୍କୁ ମିଳେ, ସେହି ସ୍ଥାନ ମଧ୍ୟ ଯୋଗୀଙ୍କୁ ମିଳେ । ଯେ ବ୍ୟକ୍ତି ସାଂଖ୍ୟ ଓ ଯୋଗକୁ ଏକ ଦୃଷ୍ଟିରେ ଦେଖନ୍ତି କେବଳ ସେହି ବ୍ୟକ୍ତି ସତ୍ୟ ଦେଖନ୍ତି । ୫ ।

ହେ ମହାବାହୋ, କର୍ମଯୋଗ ବିନା କର୍ମତ୍ୟାଗ କଷ୍ଟସାଧ୍ୟ, ମାତ୍ର ସମଭାବାପନ୍ନ ମୁନି ଶୀଘ୍ର ମୋକ୍ଷଲାଭ କରନ୍ତି । ୬ ।

ଯେ ଯୋଗ ସାଧିଛନ୍ତି, ଯେ ହୃଦୟକୁ ପବିତ୍ର କରିଛନ୍ତି, ଯେ ମନ ଓ ଇନ୍ଦ୍ରିୟକୁ ଜୟ କରିଅଛନ୍ତି, ଯେ ପ୍ରାଣୀମାନଙ୍କୁ ଆତ୍ମବତ୍ ମନେ କରନ୍ତି; ଏପରି ମନୁଷ୍ୟ କର୍ମକଲେ ମଧ୍ୟ ତହିଁରେ ନିର୍ଲିପ୍ତ ରହନ୍ତି ।୭।

ଦେଖିବା, ଶୁଣିବା, ସ୍ପର୍ଶ କରିବା, ଘ୍ରାଣ କରିବା, ଖାଇବା, ଚାଲିବା, ଶୋଇବା, ନିଶ୍ୱାସ ମାରିବା, କହିବା, ଦେବା, ନେବା, ଆଖି ବୁଜିବା ଓ ଖୋଲିବା କେବଳ ଇନ୍ଦ୍ରିୟମାନଙ୍କର ନିଜ ନିଜର

କାର୍ଯ୍ୟ ଅଟେ । ଏପରି ଭାବ ତତ୍ତ୍ୱବିଦ୍ ଲୋକ "ମୁଁ କିଛି କରୁନାହିଁ",
ବୋଲି ବିଶ୍ୱରନ୍ତି । ୮,୯ ।

ଟିପ୍ପଣୀ—ଯେ ପର୍ଯ୍ୟନ୍ତ ଅଭିମାନ ଅଛି, ସେ ପର୍ଯ୍ୟନ୍ତ ଏରୂପ ନିର୍ଲିପ୍ତ ଅବସ୍ଥା ପ୍ରାପ୍ତହୁଏ ନାହିଁ । ତେଣୁ ବିଷୟାସକ୍ତ ଲୋକ "ମୁଁ ବିଷୟ ଭୋଗ କରୁନାହିଁ, ଇନ୍ଦ୍ରିୟମାନେ ନିଜ ନିଜର କାର୍ଯ୍ୟ କରୁଛନ୍ତି" ଏପରି କହିଦେଲେ ନିର୍ଦ୍ଦୋଷ ହୋଇ ନ ପାରେ । ଏପରି ଅନର୍ଥ କରୁଥିବା ଲୋକ ଗୀତା ବୁଝେ ନାହିଁ । କିମ୍ବା ଧର୍ମ ଜାଣେ ନାହିଁ । ଏହି ବିଷୟକୁ ନିମ୍ନ ଶ୍ଳୋକ ସ୍ପଷ୍ଟ କରୁଅଛି ।

ଯେ ପରଂବ୍ରହ୍ମଙ୍କ ଠାରେ ସମସ୍ତ କର୍ମ ସମର୍ପଣ କରି ଆସକ୍ତି ତ୍ୟାଗକରି କର୍ମ କରନ୍ତି, ପାଣିରେ ଥିବା କମଳ ପତ୍ର (ଜଳରୁ) ନିର୍ଲିପ୍ତ ରହିଲାପରି ସେ ପାପରୁ ନିର୍ଲିପ୍ତ ରହନ୍ତି । ୧୦ ।

ଯୋଗୀମାନେ ଆସକ୍ତି ଛାଡ଼ି ଶରୀର, ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ସମସ୍ତ କର୍ମ କେବଳ ଆତ୍ମଶୁଦ୍ଧି ପାଇଁ ଅନୁଷ୍ଠାନ କରନ୍ତି । ୧୧ ।

ସମତାବାନ୍ ପୁରୁଷ କର୍ମଫଳକୁ ତ୍ୟାଗକରି ପରମଶାନ୍ତି ଲାଭ କରନ୍ତି, କିନ୍ତୁ ଅସ୍ଥିରଚିତ୍ତ ଲୋକ କାମନାପରିପୂର୍ଣ୍ଣ ହୋଇ ଫଳରେ ଆସକ୍ତି ରଖି ବନ୍ଧନରେ ପଡ଼ିଥାଏ । ୧୨ ।

ଜିତେନ୍ଦ୍ରିୟ ପୁରୁଷ ମନଦ୍ୱାରା ସମସ୍ତ କର୍ମକୁ ତ୍ୟାଗକରି ନବଦ୍ୱାର ବିଶିଷ୍ଟ ନଗରରେ ରହି ମଧ୍ୟ ନିଜେ କିଛି ନକରି କିମ୍ବା ଅନ୍ୟ କାହାଦ୍ୱାରା କିଛି ନ କରାଇ ସୁଖରେ ଥାଆନ୍ତି । ୧୩ ।

ଟିପ୍ପଣୀ—ଦୁଇ କାନ, ଦୁଇ ନାକ, ଦୁଇ ଆଖି, ମଳତ୍ୟାଗ କରିବାର ଦୁଇ ସ୍ଥାନ ଏବଂ ମୁହଁ, ଏପରି ଶରୀରର ନଅଟି ମୁଖ୍ୟ ଦ୍ୱାର ଅଛି; ନଚେତ୍ ଅସଂଖ୍ୟ ଲୋମ କୂପ ସବୁ ଗୋଟିଏ ଗୋଟିଏ ଦ୍ୱାର

ସ୍ୱରୂପ। ଏହି ସବୁ ଦ୍ୱାରର ଚୌକିଦାର, ଯେ କି ଏହିସବୁ ବାଟ ଦେଇ ଯିବା ଆସିବା କରିବା ଅଧିକାରୀମାନଙ୍କୁ ଯିବା ଆସିବା କରିବାକୁ ଛାଡ଼ିଦେଇ ନିଜେ ନିଜର ଧର୍ମ ତଥା କର୍ତ୍ତବ୍ୟ ପାଳନ କରେ, ତାହା ସମ୍ବନ୍ଧରେ କୁହାଇପାରେ ଯେ, ଯିବା ଆସିବା କାର୍ଯ୍ୟ ଯାହାସବୁ ଚାଲିଛି ସେଥିରେ ସେ ଭାଗୀଦାର ନୁହେଁ, କେବଳ ସାକ୍ଷୀ। ସୁତରାଂ ସେ କିଛି କରେ ନାହିଁ କିମ୍ବା କରାଏ ନାହିଁ।

ଜଗଦୀଶ୍ୱର ମନୁଷ୍ୟର କର୍ତ୍ତୃତ୍ୱକୁ ରଚନା କରୁ ନାହାନ୍ତି, କିମ୍ବା କର୍ମ ମଧ୍ୟ ରଚନା କରୁ ନାହାନ୍ତି। ଅଥବା କର୍ମ ଓ କର୍ମଫଳର ସଂଯୋଗ ମଧ୍ୟ ଗଢ଼ିଅଣ କରୁ ନାହାନ୍ତି। ପ୍ରକୃତି ଏସବୁ କରୁଅଛି। ୧୪।

ଟିପ୍ପଣୀ—ଈଶ୍ୱର କର୍ତ୍ତା ନୁହନ୍ତି। କର୍ମର ନିୟମ ଅଟଳ ଏବଂ ଅନିବାର୍ଯ୍ୟ। ଯେ ଯେପରି କରେ, ତାକୁ ସେପରି ଭୋଗିବାକୁ ପଡ଼େ। ଏଥିରେ ଈଶ୍ୱରଙ୍କର ପରମଦୟା ଏବଂ ତାହାଙ୍କର ନ୍ୟାୟ ରହିଅଛି। ଖାଣ୍ଟି ନ୍ୟାୟରେ ଶୁଦ୍ଧ ଦୟା ଥାଏ। କିନ୍ତୁ ଯେଉଁ ଦୟାଟିକ ନ୍ୟାୟର ବିରୁଦ୍ଧ ତାହା ଦୟା ନ ହୋଇ ବରଂ କ୍ରୂରତା ହୁଏ। ମନୁଷ୍ୟ ପୁଣି ତ୍ରିକାଳଦର୍ଶୀ ନୁହେଁ। ଏଥିପାଇଁ ଦୟା ତଥା କ୍ଷମା—ଏହାହିଁ ତାହା ପକ୍ଷରେ ନ୍ୟାୟ। ସେ ନିଜେ ନିରନ୍ତର ନ୍ୟାୟର ପାତ୍ର ହୋଇ କ୍ଷମାର ଯାଚକ ଅଟେ। ସେ ଅନ୍ୟର ନ୍ୟାୟକୁ କ୍ଷମାଦ୍ୱାରା କେବଳ ପରିଶୋଧ କରିପାରେ। କ୍ଷମା ଗୁଣକୁ ବିକାଶ କରି ପାରିଲେ ସେ ଶେଷରେ ଅକର୍ତ୍ତା ଯୋଗୀ, ସମତାବାନ୍ କର୍ମକୁଶଳ ହୁଏ।

ଈଶ୍ୱର କାହାର ପାପ କିମ୍ବା ପୁଣ୍ୟର ଦାୟିତ୍ୱ ଗ୍ରହଣ କରନ୍ତି ନାହିଁ। ଅଜ୍ଞାନଦ୍ୱାରା ଜ୍ଞାନ ଆଚ୍ଛାଦିତ ହୋଇଯାଏ। ତେଣୁ ମନୁଷ୍ୟ ମୋହରେ ଭାସିଯାଏ। ୧୫।

ଟିପ୍ପଣୀ—ଅଜ୍ଞାନତାବଶତଃ "ମୁଁ କରୁଛି" ବୋଲି ମନୁଷ୍ୟ ଭାବେ ଏବଂ ଏପରି ଚିନ୍ତାବୃତ୍ତି ହେବାରୁ କର୍ମର ବନ୍ଧନରେ ପଡ଼େ।

ଅଥଚ ଭଲମନ୍ଦ ଫଳକୁ ଈଶ୍ୱରଙ୍କଉପରେ ଆରୋପ କରେ । ଏହାହିଁ ମୋହ ଜାଲ ।

କିନ୍ତୁ ଆତ୍ମଜ୍ଞାନଦ୍ୱାରା ଯାହାଙ୍କର ଅଜ୍ଞାନ ନାଶ ପାଇଅଛି, ତାହାଙ୍କର ସୂର୍ଯ୍ୟଙ୍କ ପରି ତେଜୋମୟ ସେହି ଜ୍ଞାନ ପରମତତ୍ତ୍ୱକୁ ଦର୍ଶନ କରାଏ । ୧୬ ।

ଜ୍ଞାନଦ୍ୱାରା ଯାହାଙ୍କ ପାପ ଧୌତ ହୋଇଅଛି, ଯେ ଈଶ୍ୱରଙ୍କଠାରେ ଧ୍ୟାନ ରଖି ତନ୍ମୟ ହୋଇ, ତାହାଙ୍କ ଠାରେ ଚିତ୍ତକୁ ସ୍ଥିର କରି ତାଙ୍କୁ ସର୍ବସ୍ୱ ବୋଲି ମାନନ୍ତି କେବଳ ସେହି ବ୍ୟକ୍ତି ମୋକ୍ଷଲାଭ କରନ୍ତି ।୧୭।

ଜ୍ଞାନୀ ବିଦ୍ୟା ଓ ବିନୟଯୁକ୍ତ ବ୍ରାହ୍ମଣକୁ ଯେଉଁ ଦୃଷ୍ଟିରେ ଦେଖନ୍ତି, ଗୋରୁ, ହସ୍ତୀ, କୁକ୍କୁର ଏବଂ ଚଣ୍ଡାଳକୁ ମଧ୍ୟ ସେହି ଦୃଷ୍ଟିରେ ଦେଖନ୍ତି । ୧୮ ।

ଟିପ୍ପଣୀ—:ଏହାର ଅର୍ଥ ଏହି ଯେ, ଯାହାର ଯେପରି ଆବଶ୍ୟକ ତାହାକୁ ସେହିପରି ସେବା କରାଯାଏ । ବ୍ରାହ୍ମଣ ଓ ଚଣ୍ଡାଳ ଦୁହିଙ୍କୁ ସମଭାବରେ ଦେଖିବା ଅର୍ଥ— ବ୍ରାହ୍ମଣକୁ ସାପ କାମୁଡ଼ିଲେ ଜ୍ଞାନୀ ପୁରୁଷ ଯେପରି ଅତି ପ୍ରେମପୂର୍ବକ ସେହି କାମୁଡ଼ା ସ୍ଥାନକୁ ଶୋଷିନେଇ ବିଷ କାଢି ନେବାକୁ ଚେଷ୍ଟା କରନ୍ତି, ଚଣ୍ଡାଳକୁ ସାପ କାମୁଡ଼ିଲେ ସେମାନେ ଚଣ୍ଡାଳପ୍ରତି ମଧ୍ୟ ସେହିପରି ଆଚରଣ କରନ୍ତି ।

ଯାହାଙ୍କର ମନ ସମତ୍ୱରେ ସ୍ଥିର ହୋଇ ଗଲାଣି ସେ ଏହି ଦେହରେ ସଂସାରକୁ ଜୟ କରନ୍ତି । ବ୍ରହ୍ମ ନିଷ୍କଳଙ୍କ ଓ ସମଭାବାପନ୍ନ । ଏଥିପାଇଁ ସେ ବ୍ରହ୍ମରେହିଁ ସ୍ଥିର ହୁଅନ୍ତି । ୧୯ ।

ଟିପ୍ପଣୀ—ମନୁଷ୍ୟ ଯେପରି ଏବଂ ଯାହାକୁ ଚିନ୍ତା କରେ ସେ ତାହା ହୋଇଯାଏ । ଅତଏବ ସମତ୍ୱକୁ ଚିନ୍ତା କରି ଦୋଷଶୂନ୍ୟ

ହୋଇ ସମତ୍ୱରେ ସାକ୍ଷାତ୍ ମୂର୍ତ୍ତି ନିର୍ଦ୍ଦୋଷ ବ୍ରହ୍ମକୁ ସେ ଲାଭ କରେ ।

ଯାହାଙ୍କର ବୁଦ୍ଧି ସ୍ଥିର, ଯାହାଙ୍କର ମୋହ ନାଶ ପାଇଅଛି, ଯେ ବ୍ରହ୍ମଙ୍କୁ ଜାଣିଅଛନ୍ତି ଏବଂ ଯେ ବ୍ରହ୍ମପରାୟଣ, ସେ ପ୍ରିୟ ବସ୍ତୁ ପ୍ରାପ୍ତିରେ ସୁଖ କିମ୍ବା ଅପ୍ରିୟ ବସ୍ତୁ ପ୍ରାପ୍ତିରେ ଦୁଃଖ ମଧ୍ୟ କରନ୍ତି ନାହିଁ । ୨୦ ।

ବାହ୍ୟ ବିଷୟରେ ଯେ ଆସକ୍ତ ନୁହନ୍ତି, ସେହି ପୁରୁଷ ହୃଦୟରେ ଯେ ଆନନ୍ଦ ଉପଭୋଗ କରନ୍ତି, ସେହି ଅକ୍ଷୟ ଆନନ୍ଦ ବ୍ରହ୍ମପରାୟଣ ବ୍ୟକ୍ତି ଅନୁଭବ କରନ୍ତି । ୨୧ ।

ଟିପ୍ପଣୀ—ଯେ ଅନ୍ତର୍ଦୃଷ୍ଟି ହୋଇ ଅଛନ୍ତି, ସେ କେବଳ ଈଶ୍ୱର ସାକ୍ଷାତ୍କାର କରି ପାରନ୍ତି ଏବଂ ସେ ମଧ୍ୟ ପରମ ଆନନ୍ଦ ଲାଭ କରନ୍ତି । ବିଷୟରୁ ନିବୃତ୍ତ ହୋଇ କର୍ମ କରିବା ଏବଂ ବ୍ରହ୍ମ ସମାଧିସ୍ଥ ହୋଇ କ୍ରୀଡ଼ା କରିବା ଏହି ଉଭୟ ଭିନ୍ନ ଭିନ୍ନ ବସ୍ତୁ ନୁହେଁ; ବରଂ ତାହା ଗୋଟିଏ ବସ୍ତୁକୁ ଦେଖିବାପାଇଁ ଦୁଇଟି ଦୃଷ୍ଟି; ଯଥା—ଗୋଟିଏ ନକ୍ତର ଦୁଇଟି ପଟ ।

ବିଷୟଭୋଗରୁ ଯେଉଁ ସୁଖ ମିଳେ ତାହା ନିଶ୍ଚୟ ଦୁଃଖପ୍ରଦ । ହେ କୌନ୍ତେୟ, ସେମାନଙ୍କର ଆଦି ଅନ୍ତ ଅଛି । ବୁଦ୍ଧିମାନ ପୁରୁଷ ସେଥିରେ ରତ ହୁଅନ୍ତି ନାହିଁ । ୨୨ ।

ଦେହାନ୍ତପୂର୍ବରୁ ଶରୀରରେ କାମ ଓ କ୍ରୋଧର ଆବେଗକୁ ସହ୍ୟ କରିବାର ଶକ୍ତି ଯେ ଲାଭ କରନ୍ତି, ସେ ସାମ୍ୟାବସ୍ଥାକୁ ପାଇ ପରମସୁଖ ଅନୁଭବ କରନ୍ତି । ୨୩ ।

ଟିପ୍ପଣୀ—ମୃତ ଶରୀରରେ ଯେପରି ଇଚ୍ଛା କିମ୍ବା ଦ୍ୱେଷ ଭାବ ଜାତହୁଏ ନାହିଁ, ସୁଖ ଦୁଃଖ ବୋଧହୁଏ ନାହିଁ, ସେହିପରି ଯେ ଜୀବିତ ରହିଲେ ମଧ୍ୟ ମୃତ ସମାନ ଜଡ଼ଭରତ ପରି ଦେହାତୀତ ରହିପାରେ,

ସେ ଏ ଜଗତକୁ ଜୟ କରିପାରେ ଏବଂ ଯଥାର୍ଥ ସୁଖ କ'ଣ ତାହା ମଧ୍ୟ ଜାଣିପାରେ ।

ଯାହାଙ୍କର ଅନ୍ତର ଆନନ୍ଦରେ ପୂର୍ଣ୍ଣ, ଯାହାଙ୍କର ହୃଦୟ ଶାନ୍ତିପୂର୍ଣ୍ଣ, ଯାହାଙ୍କର ଅନ୍ତର୍ଜ୍ଞାନ ନିଷ୍ପତ୍ତିତ ହୋଇଅଛି, ସେହି ବ୍ରହ୍ମରୂପ-ପ୍ରାପ୍ତ ଯୋଗୀ ବ୍ରହ୍ମନିର୍ବାଣ ଲାଭ କରନ୍ତି । ୨୪ ।

ଯାହାଙ୍କର ସବୁ ପାପ କ୍ଷୟପ୍ରାପ୍ତ ହୋଇଅଛି, ଯାହାଙ୍କର ସର୍ବବିଧ ସଂଶୟ ଛିନ୍ନ ହୋଇଅଛି, ଯେ ମନକୁ ସଂଯମ କରି ଅଛନ୍ତି ଏବଂ ପ୍ରାଣୀମାନଙ୍କର ହିତ କାର୍ଯ୍ୟରେ ସର୍ବଦା ରତ ଥାନ୍ତି, ଏହିପରି ଋଷି ବ୍ରହ୍ମନିର୍ବାଣ ପ୍ରାପ୍ତ ହୁଅନ୍ତି । ୨୫ ।

ଯେ ନିଜକୁ ଚିହ୍ନି ଅଛନ୍ତି, ଯେ କାମ ଓ କ୍ରୋଧକୁ ଜୟ କରି ଅଛନ୍ତି, ଯେ ମନକୁ ବଶ କରି ଅଛନ୍ତି, ଏହିପରି ଯତିମାନଙ୍କ ନିମନ୍ତେ ସର୍ବତ୍ର ବ୍ରହ୍ମନିର୍ବାଣ ବିଦ୍ୟମାନ । ୨୬ ।

ବାହ୍ୟ ବିଷୟ ଭୋଗକୁ ତ୍ୟାଗକରି, ଦୃଷ୍ଟିକୁ ଭ୍ରୂଲତା ଦ୍ୱୟର ମଧ୍ୟ ସ୍ଥଳରେ ସ୍ଥିର ରଖି ନାସାପଥେ ଯାତାୟାତ କରୁଥିବା ପ୍ରାଣ ଓ ଅପାନ ବାୟୁର ଗତିକୁ ସମଭାବରେ ସ୍ଥିର କରି, ଇନ୍ଦ୍ରିୟ ମନ ଓ ବୁଦ୍ଧିକୁ ବଶ କରି ଏବଂ ଇଚ୍ଛା ଭୟ ଓ କ୍ରୋଧଶୂନ୍ୟ ହୋଇ, ଯେ ମୁନି ମୋକ୍ଷ ପାଇଁ ସର୍ବଦା ତତ୍ପର ଥାନ୍ତି ସେ ସବୁବେଳେ ମୁକ୍ତ ! ୨୭,୨୮ ।

ଟିପ୍ପଣୀ—ଭିତରୁ ବାହାରୁଥିବା ପବନକୁ ପ୍ରାଣବାୟୁ ଏବଂ ବାହାରୁ ଭିତରକୁ ଯାଉଥିବା ପବନକୁ ଅପାନ ବାୟୁ କୁହାଯାଏ । ଏହି ଦୁଇଟି ଶ୍ଳୋକରେ ପ୍ରାଣାୟାମାଦି ଯୌଗିକ କ୍ରିୟାକୁ ସମର୍ଥନ କରାଯାଇ ଅଛି । ପ୍ରାଣାୟାମାଦି ବାହ୍ୟିକ କ୍ରିୟା । ଏହାଦ୍ୱାରା ଶରୀର ସୁସ୍ଥ ହୁଏ, ଏବଂ ଶରୀରକୁ ଈଶ୍ୱରଙ୍କର ବାସୋପଯୋଗୀ ମନ୍ଦିର କରିବାକୁ ହେଲେ ଏହା

ମଧ୍ୟ ଆବଶ୍ୟକ ହୁଏ । ସାମାନ୍ୟ ବ୍ୟାୟାମଦ୍ୱାରା ସଂସାରୀ ଲୋକର ଯେ ଉପକାର ହୁଏ ପ୍ରାଣାୟାମାଦି କ୍ରିୟାଦ୍ୱାରା ଯୋଗୀମାନଙ୍କର ସେହି ଉପକାର ହୁଏ । ବ୍ୟାୟାମ ସଂସାରୀ ଲୋକର ଇନ୍ଦ୍ରିୟମାନଙ୍କୁ ଉତ୍ତେଜନା ଦେବାରେ ସାହାଯ୍ୟ କରେ, କିନ୍ତୁ ପ୍ରାଣାୟାମାଦି କ୍ରିୟା ଯୋଗୀମାନଙ୍କର ଶରୀରକୁ ସୁସ୍ଥ ଓ ସବଳ କରି ଇନ୍ଦ୍ରିୟମାନଙ୍କୁ ଶାନ୍ତ କରିବାରେ ସାହାଯ୍ୟ କରେ । ଆଜିକାଲି ପ୍ରାଣାୟାମାଦିର ନିୟମ ଅତି ଅଳ୍ପ ଲୋକେ ଜାଣନ୍ତି । ସେମାନଙ୍କ ମଧ୍ୟରୁ ପୁଣି ବହୁତ କମ୍ ଲୋକ ତାହାର ଉପଯୁକ୍ତ ବ୍ୟବହାର କରନ୍ତି । ଯେ ଇନ୍ଦ୍ରିୟ ମନ ଓ ବୁଦ୍ଧିକୁ ସମ୍ପୂର୍ଣ୍ଣ ରୂପେ ନ ହେଲେ ମଧ୍ୟ କିଛି ପରିମାଣରେ ବଶ କରି ପାରିଛନ୍ତି, ଯେ ମୋକ୍ଷ ପାଇଁ ବ୍ୟାକୁଳ, ଯେ ରାଗ ଦ୍ୱେଷକୁ ଜୟ କରି ଭୟଶୂନ୍ୟ ହୋଇଛନ୍ତି, ତାହାଙ୍କ ପାଇଁ କେବଳ ପ୍ରାଣାୟାମାଦି ଉପଯୋଗୀ ଓ ସାହାଯ୍ୟକାରୀ ହୁଏ । ହୃଦୟକୁ ପବିତ୍ର ନ କରି ପ୍ରାଣାୟାମ ଅଭ୍ୟାସ କଲେ ତାହା ବନ୍ଧନର କାରଣ ହୋଇ ମନୁଷ୍ୟକୁ ମୋହ କୂପର ଅତି ଗଭୀରକୁ ଟାଣି ନେଇଯାଏ ବୋଲି ଅନେକ ଅନୁଭବ କରିଛନ୍ତି । ଏଥିପାଇଁ ଯୋଗିଶ୍ରେଷ୍ଠ ପାତଞ୍ଜଳି ଯମ ନିୟମକୁ ପ୍ରଥମେ ଅଭ୍ୟାସ କଲା ପରେ, ସାଧକମାନେ କେବଳ ମୋକ୍ଷ ପାଇବା ପାଇଁ ପ୍ରାଣାୟାମାଦି କ୍ରିୟାର ସାହାଯ୍ୟ ଅବଲମ୍ବନ କରି ପାରନ୍ତି ବୋଲି କହି ଅଛନ୍ତି ।

ଯମ ପାଞ୍ଚଟି, ଯଥା—ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ ।

ନିୟମ ପାଞ୍ଚଟି, ଯଥା—ପବିତ୍ରତା, ସନ୍ତୋଷ, ତପ, ସ୍ୱାଧ୍ୟାୟ, ଏବଂ ଈଶ୍ୱର ପ୍ରଣିଧାନ ।

ଯେ ମୋତେ ସବୁ ଯଜ୍ଞ ଓ ତପର ଭୋକ୍ତା, ସବୁ ଲୋକର ମହେଶ୍ୱର ଏବଂ ପ୍ରାଣୀମାନଙ୍କର ହିତାକାଙ୍କ୍ଷୀ ବୋଲି ଜାଣନ୍ତି ସେ ଶାନ୍ତି ଲାଭ କରନ୍ତି । ୨୯ ।

ଟିପ୍ପଣୀ—ଏହି ଅଧ୍ୟାୟରେ ଚଉଦ ପନ୍ଦର ତଥା ଅନ୍ୟ ସବୁ ଏପରି ଶ୍ଳୋକମାନଙ୍କର ଅର୍ଥର ବିରୁଦ୍ଧ ଏହି ଶ୍ଳୋକ, ଏଣୁ ତାହାଙ୍କୁ ବୁଝିବା ଉଚିତ ନୁହେଁ । ଈଶ୍ୱର ସର୍ବଶକ୍ତିମାନ୍ ଥିବା ସ୍ଥଳେ ସେ କର୍ତ୍ତା ଅକର୍ତ୍ତା,ଭୋକ୍ତା ଅଭୋକ୍ତା, ସେ ସବୁ; ସେ ପୁଣି କିଛି ନୁହନ୍ତି । ସେ ବର୍ଣ୍ଣନାତୀତ, ସେ ମନୁଷ୍ୟ ଭାଷାର ଅତୀତ । ତେଣୁ ମନୁଷ୍ୟ ତାହାଙ୍କ ଠାରେ ପରସ୍ପର ବିରୁଦ୍ଧ ଗୁଣ ଓ ଶକ୍ତିମାନଙ୍କୁ ଆରୋପଣ କରି ମଧ୍ୟ ତାହାଙ୍କର ସୂକ୍ଷ୍ମ ଦର୍ଶନ ଲାଭ କରିବା ପାଇଁ ଆଶା ପୋଷଣ କରିଥାଏ ।

ଓଁ ତତ୍ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପୀ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣାର୍ଜୁନ ସଂବାଦର କର୍ମ ସନ୍ନ୍ୟାସ ଯୋଗ ନାମକ ପଞ୍ଚମ ଅଧ୍ୟାୟର ସମାପ୍ତି ।

---

( ୬ )

## ଧ୍ୟାନଯୋଗ

ଏହି ଅଧ୍ୟାୟରେ ଯୋଗ ସାଧିବା ଓ ସାମ୍ୟାବସ୍ଥାକୁ ପାଇବାପାଇଁ କେତେକ ଉପାୟ କୁହା ହୋଇଅଛି ।

ଶ୍ରୀ ଭଗବାନ୍ କହିଲେ—କର୍ମଫଳର ଆଶ୍ରୟ ନ ନେଇ ଯେଉଁ ମନୁଷ୍ୟ ବିହିତ କର୍ମ କରନ୍ତି, ସେ ସନ୍ନ୍ୟାସୀ ଓ ସେ ଯୋଗୀ । କିନ୍ତୁ ଯେ ଅଗ୍ନିକୁ ଏବଂ ଅନ୍ୟାନ୍ୟ ସମସ୍ତ କର୍ମକୁ ତ୍ୟାଗ କରନ୍ତି ସେ ନୁହନ୍ତି । ୧ ।

ଟିପ୍ପଣୀ—ଅଗ୍ନି କହିଲେ କେବଳ ସାଧନକୁ ବୁଝାଏ । ଯେବେ ଅଗ୍ନି ସାହାଯ୍ୟରେ ହୋମ କରାଯାଉଥିଲା, ସେତେବେଳେ

ଅଗ୍ନିର ଆବଶ୍ୟକତା ଥିଲା । ମନେକର ବର୍ତ୍ତମାନ ଯୁଗରେ ଅରଃ ସେବାକାର୍ଯ୍ୟର ସାଧନ, ସୁତରାଂ ତାହାକୁ ତ୍ୟାଗ କରି କେହି ସନ୍ନ୍ୟାସୀ ହୋଇ ନ ପାରେ ।

ହେ ପାଣ୍ଡବ, ଯାହାକୁ ସନ୍ନ୍ୟାସ କହନ୍ତି ତାହା ତୁମ୍ଭେ ଯୋଗ ବୋଲି ଜାଣ । ଯେ ମନ ମଧ୍ୟରୁ ସଙ୍କଳ୍ପ ତ୍ୟାଗକରି ପାରିନାହିଁ ସେ କଦାପି ଯୋଗୀ ହୋଇ ନ ପାରେ । ୨ ।

ଯୋଗସାଧକମାନଙ୍କ ପାଇଁ କର୍ମ ଏକମାତ୍ର ସାଧନ । ତାହା ଯାହାଙ୍କର ସାଧିତ ହୋଇଅଛି ତାହାଙ୍କର ଶାନ୍ତି ସାଧିତ ହୋଇଅଛି ।୩।

ଟିପ୍ପଣୀ—ଯାହାର ଆତ୍ମଶୁଦ୍ଧି ଲାଭ ହୋଇଅଛି, ଯେ ସମତ୍ୱକୁ ସାଧନ କରିଅଛି, ତାହା ପକ୍ଷରେ ଆତ୍ମଦର୍ଶନ ବଡ଼ ସହଜ । ଏହାର ଅର୍ଥ ଏପରି ନୁହେଁ, ଯୋଗାରୂଢ଼ ବ୍ୟକ୍ତିଙ୍କୁ ଲୋକ ସଂଗ୍ରହ ନିମିତ୍ତ ମଧ୍ୟ କିଛି କାମ କରିବାକୁ ହୁଏନାହିଁ । ଲୋକ ସଂଗ୍ରହ ବିନା ସେ ଜୀବିତ ରହି ପାରନ୍ତି ନାହିଁ, ଅର୍ଥାତ୍ ସେବାକାର୍ଯ୍ୟ କରିବା ତାଙ୍କ ପକ୍ଷରେ ବଡ଼ ସହଜ । ସେ ଲୋକ ଦେଖାଇବାପାଇଁ କିଛି କରନ୍ତି ନାହିଁ । ( ୩ୟ ୪ର୍ଥ ଶ୍ଳୋକ ୫ମ ଅ: ୨ୟ ଶ୍ଳୋକ ସଙ୍ଗେ ମିଳାଅ )

ମନୁଷ୍ୟ ଯେତେବେଳେ ଇନ୍ଦ୍ରିୟମାନଙ୍କ ବିଷୟରେ କିମ୍ବା କର୍ମରେ ଆସକ୍ତ ନରଖି ସମସ୍ତ ସଂକଳ୍ପ ତ୍ୟାଗ କରେ, ସେତେବେଳେ ତାହାକୁ ଯୋଗାରୂଢ଼ କୁହାଯାଏ । ୪ ।

ଆତ୍ମାଦ୍ୱାରା ମନୁଷ୍ୟ ଆତ୍ମାର ଉଦ୍ଧାର କରୁ, ତାହାର ଅଧୋଗତି ନ କରୁ । ଆତ୍ମା ଆତ୍ମାର ବନ୍ଧୁ ଅଟେ ଏବଂ ସେହି ଆତ୍ମା ପୁଣି ଆତ୍ମାର ଶତ୍ରୁ ଅଟେ । ୫ ।

ଯେ ଆପଣାର ମନକୁ ଜୟ କରିଅଛନ୍ତି, ସେ ଆପେ ଆପଣାର ମିତ୍ର ଅଟନ୍ତି । ଯେ ପୁଣି ଆପେ ଆପଣାକୁ ଜୟ କରି ପାରି ନାହାନ୍ତି ସେ ଆପେ ଆପଣାକୁ ଶତ୍ରୁପରି ବ୍ୟବହାର କରନ୍ତି । ୬ ।

ଯେ ଆପଣାର ମନକୁ ଜୟ କରି ଅଛନ୍ତି, ଏବଂ ଯାହାର ଆତ୍ମା ସଂପୂର୍ଣ୍ଣ ରୂପେ ଶାନ୍ତ ହୋଇଅଛି, ତାହାଙ୍କ ଆତ୍ମା ଶୀତ ଉଷ୍ଣ, ସୁଖ ଦୁଃଖ, ମାନ ଅପମାନ ଇତ୍ୟାଦି ବିଷୟରେ ସର୍ବଦା ସମାନ ଥାଏ । ୭ ।

ଜ୍ଞାନ ଓ ଅନୁଭୂତି ଦ୍ଵାରା ଯେ ତୃପ୍ତି ଲାଭକରି ଅଛନ୍ତି, ଯେ ଅବିଚଳିତ, ଯେ ଇନ୍ଦ୍ରିୟଜିତ, ଏବଂ ଯାହାଙ୍କ ଆଖିରେ ମାଟି ପଥର ଓ ସୁନା ସବୁ ସମାନ ଏପରି ଈଶ୍ଵରପରାୟଣ ପୁରୁଷଙ୍କୁ ଯୋଗୀ କୁହାଯାଏ । ୮ ।

ହିତାକାଙ୍କ୍ଷୀ, ମିତ୍ର, ଶତ୍ରୁ, ନିରପେକ୍ଷ ମଧ୍ୟସ୍ଥ ବ୍ୟକ୍ତି, ଦ୍ଵେଷ୍ୟ, ବନ୍ଧୁ, ସାଧୁ ଓ ପାପୀ ଆଦି ସବୁ ପ୍ରକାର ଲୋକଙ୍କ ପ୍ରତି ଯେ ସମଭାବ ରଖନ୍ତି ସେ ଶ୍ରେଷ୍ଠ ପୁରୁଷ ଅଟନ୍ତି । ୯ ।

ଚିତ୍ତକୁ ସ୍ଥିରକରି, ବାସନା ଓ ସଂଗ୍ରହକୁ ତ୍ୟାଗକରି, ନିଜେ ଏକାକୀ ଏକାନ୍ତରେ ରହି ଯୋଗୀ ନିଜର ଆତ୍ମାକୁ ପରମାତ୍ମାଙ୍କ ସହିତ ନିରନ୍ତର ଯୁକ୍ତ କରନ୍ତି । ୧୦ ।

ପବିତ୍ର ଏବଂ ଅତି ଉଚ୍ଚ କିମ୍ବା ଅତି ନୀଚ ନୁହେଁ ଏପରି ସ୍ଥାନରେ ପ୍ରଥମେ କୁଶାସନ, ତା' ଉପରେ ମୃଗ ଚର୍ମ, ତା' ଉପରେ ବସ୍ତ୍ର ଏପରି ନିଜ ପାଇଁ ଆସନ ପକାଇ, ତହିଁରେ ଏକାଗ୍ର ମନରେ ବସି, ଚିତ୍ତ ଓ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ଆତ୍ମଶୁଦ୍ଧି କରିବା ପାଇଁ ଯୋଗ ସାଧନ କରନ୍ତି । ୧୧,୧୨।

ପିଠି, ବେକ ଓ ମୁଣ୍ଡକୁ ସରଳରେଖା କ୍ରମେ ନିଶ୍ଚଳ ରଖି, ଏଣେତେଣେ ନଚାହିଁ ନାକର ଅଗ୍ରଭାଗରେ ଦୃଷ୍ଟି ରଖି, ଭୟଶୂନ୍ୟ

ଛାଡ଼ି, ବ୍ରହ୍ମଚର୍ଯ୍ୟରେ ଦୃଢ଼ ରହି, ମନକୁ ସଂଯମ କରି ମୋʼ ଠାରେ ଚିତ୍ତ ଲଗାଇ ଯୋଗୀ ମୋର ଧ୍ୟାନଧରି ବସିଥାନ୍ତି । ୧୩,୧୪।

ଟିପ୍ପଣୀ—ନାସିକାର ଅଗ୍ରଭାଗ କହିଲେ ଭ୍ରୂଲତାର ମଧ୍ୟସ୍ଥଳ । ୫ମ ଅ: ୨୭ ଶ୍ଳୋକ । ବ୍ରହ୍ମଚର୍ଯ୍ୟ ବ୍ରତ କହିଲେ—କେବଳ ବୀର୍ଯ୍ୟ ସଂଗ୍ରହ ନୁହେଁ, ବ୍ରହ୍ମଙ୍କୁ ପାଇବା ପାଇଁ ଆବଶ୍ୟକ ଅହିଂସାଦି ସମସ୍ତ ପ୍ରକାରକୁ ବୁଝାଏ ।

ଏହିପରି ଯାହାଙ୍କର ମନ ନିୟମାଧୀନ ହୋଇଅଛି, ସେହି ଯୋଗୀ ପରମାତ୍ମାଙ୍କ ସହିତ ସତତ ନିଜ ଆତ୍ମାର ଯୋଗ ସାଧନ କରନ୍ତି ଏବଂ ମୋତେ ପାଇବାରେ ଯେଉଁ ମୋକ୍ଷ ମିଳେ, ସେହି ମୋକ୍ଷ ରୂପକ ପରମ ଶାନ୍ତି ଲାଭ କରନ୍ତି । ୧୫ ।

ହେ ଅର୍ଜୁନ, ଯେ ବ୍ୟକ୍ତି ବେଶି ମାତ୍ରାରେ ଆହାର କରନ୍ତି, କିମ୍ବା କିଛି ନ ଖାଇ ଏକାବେଳକେ ଉପବାସ ରହନ୍ତି, ଯେ ପୁଣି ବହୁତ ଶୁଅନ୍ତି, କିମ୍ବା ବହୁତ ଉଜାଗର ରହନ୍ତି, ସେ ଏହି ସମତ୍ୱରୂପୀ ଯୋଗକୁ ଲାଭ କରି ପାରନ୍ତି ନାହିଁ । ୧୬ ।

ଯାହାଙ୍କର ଆହାର ବିହାର ପରିମିତ, ସମସ୍ତ କାର୍ଯ୍ୟ ନିୟନ୍ତ୍ରିତ ଏବଂ ଶୟନ ଓ ଜାଗରଣ ନିୟମାଧୀନ, ତାହାଙ୍କର ଯୋଗ ସାଧନ ଦୁଃଖ-ନାଶକ ହୁଏ । ୧୭ ।

ପୂର୍ଣ୍ଣ ରୂପରେ ନିୟମାଧୀନ ମନ ଯେତେବେଳେ ଆତ୍ମାରେ ସ୍ଥିର ରହେ ଏବଂ ମନୁଷ୍ୟ ସମସ୍ତ ପ୍ରକାର କାମନା ପ୍ରତି ନିସ୍ପୃହ ହୋଇଯାଏ ସେତେବେଳେ ତାହାକୁ ଯୋଗୀ କହନ୍ତି । ୧୮ ।

ଆତ୍ମାକୁ ପରମାତ୍ମାଙ୍କ ସହିତ ଯୋଗ କରିବାକୁ ଚେଷ୍ଟା କରୁଥିବା ଅଚଳଚିତ୍ତ ଯୋଗୀଙ୍କର ବୁଦ୍ଧି ପବନ ନଥିବା ସ୍ଥାନରେ ଦୀପଶିଖା ପରି ସ୍ଥିର ଅଟେ । ୧୯ ।

ଯୋଗସାଧନରେ ବଶୀଭୂତ ମନ ଯେଉଁ ଅବସ୍ଥାରେ ପରମ ଶାନ୍ତି ଅନୁଭବ କରେ, ଯେଉଁ ଅବସ୍ଥାରେ ମନୁଷ୍ୟ ଆତ୍ମାଦ୍ୱାରା ଆତ୍ମାକୁ ଦେଖେ ଏବଂ ସେଥିରେ ସନ୍ତୋଷ ଲାଭ କରେ, ଯେଉଁ ଅବସ୍ଥାରେ ଇନ୍ଦ୍ରିୟ-ଅଗୋଚର ଓ କେବଳ ବୁଦ୍ଧିଦ୍ୱାରା ଅନୁଭବଯୋଗ୍ୟ ଏପରି ପରମ ସୁଖ ଅନୁଭବ କରାଯାଏ, ଯେଉଁ ଅବସ୍ଥାରେ ପହଞ୍ଚିଲେ ସେହି ମୂଳ ବସ୍ତୁରୁ ଆଉ ଛାଡ଼ି ଆସିବାକୁ ହୁଏ ନାହିଁ, ଯାହାକୁ ପାଇଲେ ଅନ୍ୟ କିଛି ଅଧିକ ଲାଭଜନକ ବୋଲି ବୋଧହୁଏ ନାହିଁ, ଯେଉଁଠାରେ ସ୍ଥିର ରହିଲା ପରେ କୌଣସି ଭୀଷଣ ଦୁଃଖ ବିଚଳିତ କରି ନ ପାରେ, ସେହି ଦୁଃଖ ପ୍ରସଙ୍ଗ-ଶୂନ୍ୟ ସ୍ଥିତିକୁ ଯୋଗସ୍ଥିତି ବୋଲି ଜାଣିବ । ଏହି ଯୋଗକୁ ଦୃଢ଼ ଓ ଅବିଚଳିତ ଭାବରେ ଅଭ୍ୟାସ କରିବା ଉଚିତ । ୨୦,୨୧,୨୨,୨୩ ।

ସଂକଳ୍ପରୁ ଜାତ କାମନା ସମୂହ ସମ୍ପୂର୍ଣ୍ଣରୂପେ ପରିତ୍ୟାଗ କରି ଏବଂ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ଚାରିଆଡ଼ୁ ଟାଣି ଆଣି ସେମାନଙ୍କୁ ଉତ୍ତମରୂପେ ନିୟମାଧୀନ ରଖି ନିଶ୍ଚଳ ବୁଦ୍ଧିଦ୍ୱାରା ଯୋଗୀ ଧୀରେ ଧୀରେ ଶାନ୍ତ ହୋଇଯାଏ, ଏବଂ ମନକୁ ଆତ୍ମାରେ ଅଭିନିବେଶ କରି ଅନ୍ୟ କିଛି ବିଷୟ ଚିନ୍ତା କରେନାହିଁ । ୨୪,୨୫ ।

ଏହି ଚଞ୍ଚଳ ଓ ଅସ୍ଥିର ମନ ଇତସ୍ତତଃ ହେଲାବେଳେ ପୁଣି ତାକୁ ଟାଣିଆଣି ଆପଣାର ବଶ କରିବାକୁ ହେବ । ୨୬ ।

ଯାହାଙ୍କର ମନ ଉତ୍ତମରୂପେ ଶାନ୍ତ ହୋଇଅଛି, ଯାହାଙ୍କର ବିକାର ଲୋପ ପାଇଅଛି ଏପରି ବ୍ରହ୍ମଭୂତ ଓ ନିଷ୍ପାପ ଯୋଗୀ ଅବଶ୍ୟହିଁ ଉତ୍ତମ ସୁଖ ପାନ୍ତି । ୨୭ ।

ଏହିପରି ନିରନ୍ତର ଆତ୍ମାରସହିତ ମିଳିତ ହୋଇ ପାପରହିତ ଯୋଗୀ ଅତି ସହଜରେ ବ୍ରହ୍ମପ୍ରାପ୍ତିରୂପକ ଅନନ୍ତ ସୁଖକୁ ଅନୁଭବ କରି ପାରନ୍ତି । ୨୮ ।

ସର୍ବଂ ସମଭାବ ରଖିଥିବା ଯୋଗୀ ଭୂତମାନଙ୍କ ଭିତରେ ନିଜକୁ ଏବଂ ସର୍ବଭୂତଙ୍କୁ ନିଜଭିତରେ ଦେଖନ୍ତି । ୨୯ ।

ଯେ ବ୍ୟକ୍ତି ମୋତେ ସର୍ବତ୍ର ଦେଖି ପାରନ୍ତି ଏବଂ ସମସ୍ତଙ୍କୁ ମଧ୍ୟ ମୋ' ଭିତରେ ଦେଖି ପାରନ୍ତି, ସେହି ବ୍ୟକ୍ତି ମୋ'ଠାରୁ ଅଦୃଶ୍ୟ ହୁଅନ୍ତି ନାହିଁ କିଂବା ମୁଁ ମଧ୍ୟ ତାହାଙ୍କଠାରୁ ଅଦୃଶ୍ୟ ହୁଏ ନାହିଁ । ୩୦ ।

ମୋ'ଠାରେ ତନ୍ମୟ ହୋଇଥିବା ଯୋଗୀ ଭୂତମାନଙ୍କ ଭିତରେ ଅବସ୍ଥିତ ମୋତେହିଁ ଭଜନ୍ତି । ସେ ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ସର୍ବଦା ମୋ'ଠାରେ ଥାନ୍ତି । ୩୧ ।

ଟିପ୍ପଣୀ—ମୁଁ ଭାବ ଯେ ପର୍ଯ୍ୟନ୍ତ ଅଛି, ସେ ପର୍ଯ୍ୟନ୍ତ ପରମାତ୍ମା ବହୁ ଦୂରରେ । "ମୁଁ" ଭାବ ଲୋପ ପାଇଲେ ସବୁ ଶୂନ୍ୟ । ସେତେବେଳେ ପରମାତ୍ମା ସର୍ବତ୍ର ଦେଖା ଯାନ୍ତି । ( ୧୩ ଅ: ୨୩ ଶ୍ଳୋ ଟିପ୍ପଣୀ ଦେଖ )

ହେ ଅର୍ଜୁନ, ଯେ ବ୍ୟକ୍ତି ନିଜପରି ସମସ୍ତଙ୍କୁ ଦେଖି ପାରନ୍ତି । ଏବଂ ସୁଖ ଦୁଃଖ ଉଭୟକୁ ସମାନଭାବରେ ଗ୍ରହଣ କରନ୍ତି, ସେ ଶ୍ରେଷ୍ଠ ଯୋଗୀ ଅଟନ୍ତି । ୩୨ ।

ଅର୍ଜୁନ କହିଲେ—ହେ ମଧୁସୂଦନ, ସମତ୍ୱରୂପୀ ଯେଉଁ ଯୋଗ କଥା ଆପଣ କହିଲେ ମନର ଚଞ୍ଚଳତା ବଶତଃ ମୁଁ ତାହାର ସ୍ଥିରତା ଦେଖିପାରୁ ନାହିଁ । ୩୩ ।

କାରଣ ହେ କୃଷ୍ଣ, ମନ ବଡ଼ ଚଞ୍ଚଳ, ସେ ମନୁଷ୍ୟକୁ ମନ୍ଥି ପକାଏ ଏବଂ ବହୁ ବଳବାନ୍ ଅଟେ । ପବନକୁ ଅଟକାଇ ରଖିବା ଯେପରି କଠିନ, ମନକୁ ବଶ କରିବା ସେହିପରି କଠିନ ମୁଁ ମନେ କରୁଅଛି । ୩୪ ।

ଶ୍ରୀ ଭଗବାନ କହିଲେ—ହେ ମହାବାହୋ, ମନ ଅତି ଚଞ୍ଚଳ ଏବଂ ତାକୁ ବଶ କରିବା ମଧ୍ୟ କଠିନ ଏଥିରେ କିଞ୍ଚିମାତ୍ର ସନ୍ଦେହ ନାହିଁ; କିନ୍ତୁ ହେ କୌନ୍ତେୟ, ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ମନକୁ ବଶ କରାଯାଇ ପାରେ । ୩୫ ।

ମୋ ମତରେ ଯାହାଙ୍କର ମନ ବଶୀଭୂତ ହୋଇନାହିଁ ତାଙ୍କ ପକ୍ଷରେ ଯୋଗ ସାଧନା ଅତି କଠିନ । ମାତ୍ର ଯାହାର ମନ ଆପଣାର ବଶବର୍ତ୍ତୀ ହୋଇଅଛି ଏବଂ ଯେ ଯତ୍ନଶୀଳ, ସେ ଉପାୟ ବଳରେ ସାଧନା କରି ପାରନ୍ତି । ୩୬ ।

ଅର୍ଜୁନ କହିଲେ—ହେ କୃଷ୍ଣ, ଶ୍ରଦ୍ଧା ଥାଇ ମଧ୍ୟ ପୂର୍ଣ୍ଣ ପ୍ରଯତ୍ନ ଅଭାବରୁ ଯେ ଯୋଗସିଦ୍ଧି ଲାଭ କରି ନ ପାରନ୍ତି, ସେହି ଯୋଗ ଭ୍ରଷ୍ଟବ୍ୟକ୍ତିଙ୍କର କି ଗତି ହୁଏ ? ୩୭ ।

ହେ ମହାବାହୋ, ଏପରି ଯୋଗଭ୍ରଷ୍ଟ ବ୍ୟକ୍ତି ବ୍ରହ୍ମମାର୍ଗରେ ସ୍ଥିର ରହି ନ ପାରିବା ହେତୁ, ଛିନ୍ନ ଭିନ୍ନ ମେଘପରି ଉଭୟକୂଳ ହରାଇ ତାଙ୍କର ନାଶ ହୁଏ ନାହିଁ ତ ? ୩୮ ।

ହେ କୃଷ୍ଣ, ମୋର ଏପରି ସନ୍ଦେହ ଦୂର କରିବା ପାଇଁ ତୁମ୍ଭେ ଯଥାର୍ଥ ପାତ୍ର । ତୁମ୍ଭ ଛଡ଼ା ଅନ୍ୟ କେହି ମୋର ସନ୍ଦେହ ଦୂର କରି ପାରିବେ ନାହିଁ । ୩୯ ।

ଶ୍ରୀ ଭଗବାନ୍ କହିଲେ—ହେ ପାର୍ଥ, ଏହିପରି ପୁରୁଷର ଇହଲୋକ, କିମ୍ବା ପରଲୋକ, କେଉଁଠାରେ ହେଲେ ବିନାଶ ନାହିଁ । ହେ ତାତ କଲ୍ୟାଣମାର୍ଗକୁ ଅନୁସରଣ କରୁଥିବା ବ୍ୟକ୍ତିର କଦାପି ଦୁର୍ଗତି ହୁଏ ନାହିଁ । ୪୦ ।

ପୁଣ୍ୟବାନ ପୁରୁଷ ଯେଉଁ ଲୋକକୁ ପ୍ରାପ୍ତ ହୁଅନ୍ତି, ଏହି ଯୋଗଭ୍ରଷ୍ଟ ବ୍ୟକ୍ତି ସେହିଲୋକକୁ ପାଇ, ସେଠାରେ ବହୁକାଳ ବାସ କଲାପରେ,

ପୁଣି କୌଣସି ଏକ ପବିତ୍ର ଓ ସାଧକଶ୍ରେଷ୍ଠର ଗୃହରେ ଜନ୍ମଗ୍ରହଣ କରନ୍ତି । ୪୧ ।

ଅଥବା ସେ ଜ୍ଞାନବାନ୍ ଯୋଗୀମାନଙ୍କର କୁଳରେ ଜନ୍ମଗ୍ରହଣ କରନ୍ତି । ଏହି ପ୍ରକାର ଜନ୍ମ ଜଗତରେ ଅତି ଦୁର୍ଲଭ ଅଟେ । ୪୨ ।

ହେ କୁରୁନନ୍ଦନ, ସେଠାରେ ତାହାଙ୍କୁ ପୂର୍ବ ଜନ୍ମର ବୁଦ୍ଧି ସଂସ୍କାର ମିଳେ ଏବଂ ସେ ପୁଣି ସେହିଠାରୁ ମୋକ୍ଷ ପାଇବା ପାଇଁ ଅଧିକ ପ୍ରଯତ୍ନ କରନ୍ତି । ୪୩ ।

ସେହି ପୂର୍ବ ଅଭ୍ୟାସ ବଳରୁ ସେ ନିଶ୍ଚୟ ଯୋଗଅନ୍ତକୁ ଟାଣି ହେବେ । ଯୋଗ ଜାଣିବାକୁ ଇଚ୍ଛା କରୁଥିବା ବ୍ୟକ୍ତି ସକାମ ବୈଦିକ କର୍ମର ସ୍ଥିତିକୁ ଅତିକ୍ରମ କରିଯାନ୍ତି । ୪୪ ।

ଏହି ପ୍ରକାରେ ଯତ୍ନପୂର୍ବକ ଅଭ୍ୟାସ କରୁ କରୁ ଯୋଗୀ ପାପରୁ ମୁକ୍ତ ହୋଇ ଅନେକ ଜନ୍ମପରେ ପବିତ୍ରତା ଲାଭ କରି ପରମ ଗତିକୁ ପ୍ରାପ୍ତ ହୁଅନ୍ତି । ୪୫ ।

ତପସ୍ୱୀମାନଙ୍କଠାରୁ ଯୋଗୀ ଶ୍ରେଷ୍ଠ, ଜ୍ଞାନୀମାନଙ୍କଠାରୁ ସେ ମଧ୍ୟ ଅଧିକ ମାନନୀୟ, ସେହିପରି କର୍ମକାଣ୍ଡୀଙ୍କଠାରୁ ମଧ୍ୟ ସେ ଅଧିକ ଅଟନ୍ତି । ଅତଏବ ହେ ଅର୍ଜୁନ, ତୁମ୍ଭେ ଯୋଗୀ ହୁଅ । ୪୬ ।

ଟିପ୍ପଣୀ—ଏଠାରେ ତପସ୍ୱୀର ତପସ୍ୟା ଫଳ ଇଚ୍ଛାଯୁକ୍ତ । ଜ୍ଞାନୀର ଅର୍ଥ ଅନୁଭବ ଜ୍ଞାନୀ ନୁହେଁ ।

ସମସ୍ତ ଯୋଗୀମାନଙ୍କ ମଧ୍ୟରେ ଯେ ମୋ'ଠାରେ ମନକୁ ନିବିଷ୍ଟ କରି ଶ୍ରଦ୍ଧାପୂର୍ବକ ମୋର ଧ୍ୟାନ କରେ ତାହାକୁ ମୁଁ ସର୍ବଶ୍ରେଷ୍ଠ ଯୋଗୀ ବୋଲି ବୁଝେ । ୪୭ ।

ଓଁ ତତ୍‌ସତ୍ ।

ଏହିଠାରେ ଶ୍ରୀମଦ୍‌ଭଗବଦ୍ଗୀତା ରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମ ବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣାର୍ଜୁନ ସଂବାଦର ଧ୍ୟାନ ଯୋଗ ନାମକ ଷଷ୍ଠଅଧ୍ୟାୟର ସମାପ୍ତି ।

—–—o—–—

( ୭ )

## ଜ୍ଞାନ ବିଜ୍ଞାନ ଯୋଗ

ଈଶ୍ୱରତତ୍ତ୍ୱ ଓ ଈଶ୍ୱରଭକ୍ତି କ'ଣ ତାହା ବୁଝାଇବା ଏହି ଅଧ୍ୟାୟରେ ଆରମ୍ଭ କରାଗଲା ।

ଶ୍ରୀ ଭଗବାନ କହିଲେ—ହେ ପାର୍ଥ ! ମୋ'ଠାରେ ମନ ଅଭିନିବେଶ କରି ଏବଂ ମୋର ଆଶ୍ରୟ ନେଇ ଯୋଗ ସାଧନ କରୁ କରୁ କିପରିଭାବରେ ନିଃସନ୍ଦେହଭାବରେ ଏବଂ ସମ୍ପୂର୍ଣ୍ଣରୂପେ ମୋତେ ଜାଣି ପାରିବ ତାହା ତୁମ୍ଭେ ଶୁଣ । ୧ ।

ଅନୁଭବଯୁକ୍ତ ଏହି ଜ୍ଞାନ ମୁଁ ତୁମ୍ଭଙ୍କୁ ପୂର୍ଣ୍ଣମାତ୍ରାରେ କହିବି । ତାହା ଜାଣିଲେ ଆଉ କିଛି ଅଧିକ ଜାଣିବାର ଆବଶ୍ୟକ ଏ ସଂସାରରେ ରହିବ ନାହିଁ । ୨ ।

ହଜାରକରେ କେହି କ୍ୱଚିତ୍ ସିଦ୍ଧି ପାଇବାକୁ ଯତ୍ନ କରନ୍ତି । ଏହିପରି ଯତ୍ନ କରୁଥିବା ସିଦ୍ଧ ପୁରୁଷମାନଙ୍କ ମଧ୍ୟରୁ ପୁଣି କେହି କେବେ ମୋତେ ପ୍ରକୃତରେ ଜାଣି ପାରନ୍ତି । ୩ ।

ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଙ୍କାର ଏହି ଆଠଟି ମୋର ପ୍ରକୃତି । ୪ ।

ଟିପ୍ପଣୀ—ଏହି ଅଷ୍ଟତତ୍ତ୍ୱଯୁକ୍ତସ୍ୱରୂପ 'କ୍ଷେତ୍ର' ଅର୍ଥାତ୍ କ୍ଷର ପୁରୁଷ । ୧୩ ଅଃ ୫ ଶ୍ଳୋଃ ଓ ୧୫ ଶ୍ଳୋଃ ୧୬ ଶ୍ଳୋଃ ଦେଖ ।

ଏହାକୁ ଅପରାପ୍ରକୃତି ବୋଲାଯାଏ, ଏହାଠାରୁ ଉଚ୍ଚ ପରାପ୍ରକୃତି; ତାହା ଜୀବରୂପୀ ଅଟେ । ହେ ମହାବାହୋ, ଏହା ଉପରେ ନିର୍ଭର କରି ଏ ଜଗତ ଚଳୁଅଛି । ୫ ।

ଏହି ଦୁଇଟି ଭୂତମାନଙ୍କର ଉତ୍ପତ୍ତିର କାରଣ ବୋଲି ଜାଣ; ମୁଁ ସମଗ୍ର ଜଗତର ଉତ୍ପତ୍ତି ଓ ଲୟର କାରଣ ଅଟେ । ୬ ।

ହେ ଧନଞ୍ଜୟ, ମୋ'ଠାରୁ ଶ୍ରେଷ୍ଠ ଅନ୍ୟ କେହି ନାହିଁ । ସୂତାରେ ମାଳଗୁନ୍ଥା ହେଲା ପରି ଏମାନେ ମୋ'ଠାରେ ଗୁନ୍ଥାହୋଇ ରହିଛନ୍ତି । ୭ ।

ହେ କୌନ୍ତେୟ, ପାଣିର ସ୍ୱାଦ ମୁଁ, ସୂର୍ଯ୍ୟଚନ୍ଦ୍ରଙ୍କର ତେଜ ମୁଁ, ଏବଂ ବେଦମାନଙ୍କର ଓଁକାର ମୁଁ, ଆକାଶର ଶବ୍ଦ ମୁଁ ଏବଂ ପୁରୁଷର ପରାକ୍ରମ ମଧ୍ୟ ମୁଁ ଅଟେ । ପୃଥିବୀରେ ସୁଗନ୍ଧ ମୁଁ, ଅଗ୍ନିରେ ତେଜ ମୁଁ, ପ୍ରାଣୀମାନଙ୍କର ଜୀବନ ମୁଁ ଏବଂ ତପସ୍ୱୀମାନଙ୍କର ତପ ମଧ୍ୟ ମୁଁ ଅଟେ । ୯ ।

ହେ ପାର୍ଥ, ମୁଁ ପ୍ରାଣୀମାନଙ୍କର ସନାତନ ବୀଜଅଟେ । ବୁଦ୍ଧିମାନ ପୁରୁଷର ବୁଦ୍ଧି 'ମୁଁ' ଏବଂ ତେଜସ୍ୱୀ ପୁରୁଷର ତେଜ ମଧ୍ୟ ମୁଁ ଅଟେ । ୧୦ ।

ମୁଁ କାମନା ଓ ଆସକ୍ତିରହିତ ବଳବାନ ପୁରୁଷର 'ବଳ' । ହେ ଭରତର୍ଷଭ, ପ୍ରାଣୀମାନଙ୍କର ଯେଉଁ କାମନା ଧର୍ମର ବିରୁଦ୍ଧ ନୁହେଁ ମୁଁ ମଧ୍ୟ ତାହା ଅଟେ । ୧୧ ।

ତୁମେ ଜାଣ ଯେ, ଯେଉଁ ସବୁ ସାତ୍ତ୍ୱିକ, ରାଜସିକ ଓ ତାମସିକ ଭାବ ଅଛି ସେ ସବୁ ମୋଠାରୁ ଜାତ । ସେ ସବୁ ମୋ ଭିତରେ ଅଛି, ମାତ୍ର ମୁଁ ସେମାନଙ୍କ ଭିତରେ ନାହିଁ । ୧୨ ।

ଟିପ୍ପଣୀ :— ଏହିସବୁ ଭାବରୂପରେ ପରମାତ୍ମା ନିର୍ଭର କରନ୍ତି ନାହିଁ; ମାତ୍ର ଏ ସମସ୍ତ ଭାବ ତାହାଙ୍କ ଉପରେ ନିର୍ଭର କରେ, ତାହାଙ୍କର ଆଧାରଭୂତ ଏବଂ ବଶୀଭୂତ ମଧ୍ୟ ଅଟେ ।

ଏହି ତିନଗୁଣ ମିଶ୍ରିତ ଭାବଦ୍ୱାରା ସମସ୍ତ ଜଗତ ମୋହିତ ହୋଇ ପଡ଼ିଅଛି, ଏଥିପାଇଁ ମୁଁ ଯେ ତାହାଠାରୁ ଭିନ୍ନ, ଭିନ୍ନ ଏବଂ ଅବିନାଶୀ ଏହା ସେମାନେ ଜାଣୁ ନାହାଁନ୍ତି । ୧୩ ।

ମୋର ଏହି ପ୍ରକାର ତିନଗୁଣ ମିଶ୍ରିତ ଦୈବୀ ମାୟାରୁ ପାର ହୋଇଯିବା ବଡ଼ କଠିନ । ମାତ୍ର ଯେ ମୋଠାରେ ଶରଣ ନିଏ ସେ କେବଳ ଏଥିରୁ ପାରି ପାଇପାରେ । ୧୪ ।

ଦୁରାଚାରୀ ମୂଢ଼ ଅଧମ ମନୁଷ୍ୟ ମୋ'ଠାରେ ଶରଣ ପଶନ୍ତି ନାହିଁ । ସେମାନେ ଅସୁର ପ୍ରକୃତିର ଲୋକ । ମାୟା ସେମାନଙ୍କର ଜ୍ଞାନକୁ ହରଣ କରେ । ୧୫ ।

ହେ ଅର୍ଜୁନ, ଚାରିପ୍ରକାର ସଦାଚାରୀ ଲୋକ ମୋତେ ଭଜନ୍ତି । କୌଣସି ଦୁଃଖରେ ପଡ଼ି ମନୁଷ୍ୟ ମୋତେ ଡ଼ାକେ, ନଚେତ୍ ବା ଜ୍ଞାନ ପାଇବାକୁ ଇଚ୍ଛାକରି କେହି ମୋତେ ପୂଜାକରେ । ଅଥବା କେହି କେହି କିଛି ଲାଭ ଆଶାରେ ମୋତେ ଭଜନ୍ତି । ଜ୍ଞାନୀମାନେ ତ ସହଜରେ ମୋର ଆରାଧନା କରନ୍ତି । ୧୬ ।

ଏମାନଙ୍କ ମଧ୍ୟରୁ ଯେ ନିତ୍ୟ ସମଭାବରେ କେବଳ ମୋତେ ଭଜନ୍ତି ସେ ଶ୍ରେଷ୍ଠ ଜ୍ଞାନୀ; ମୁଁ ଜ୍ଞାନୀମାନଙ୍କର ଅତ୍ୟନ୍ତ ପ୍ରିୟ; ଜ୍ଞାନୀମାନେ ମଧ୍ୟ ମୋର ପ୍ରିୟ । ୧୭ ।

ଏମାନେ ସମସ୍ତେ ମୋର ଭକ୍ତ, କିନ୍ତୁ ମୁଁ ଜାଣିବାରେ ଜ୍ଞାନୀ ମୋର ଆତ୍ମାସ୍ୱରୂପ ଅଟେ । କାରଣ ମୋତେ ପାଇବା ଛଡ଼ା ଅନ୍ୟ କିଛି ଅଧିକ ଉତ୍ତମ ଗତି ନାହିଁ ଏହା ଜାଣି ସେହି ଯୋଗୀ ମୋର ଆଶ୍ରୟ ଗ୍ରହଣ କରନ୍ତି । ୧୮ ।

ଅନେକ ଜନ୍ମପରେ ଜ୍ଞାନୀ ପୁରୁଷ ମୋତେ ପାଆନ୍ତି । ସମସ୍ତ ବାସୁଦେବ ଅର୍ଥାତ୍ ବାସୁଦେବଙ୍କ ଭିନ୍ନ ଅନ୍ୟ କିଛି ନାହିଁ ଏପରି ବୁଝିବା ମହାପୁରୁଷ ଅତି ଦୁର୍ଲଭ । ୧୯ ।

ନାନାପ୍ରକାର କାମନାଦ୍ୱାରା ଯାହାଙ୍କର ଜ୍ଞାନ ଅପହୃତ ହୋଇଅଛି, ଏପରି ଲୋକମାନେ ନିଜ ନିଜର ପ୍ରକୃତି ଅନୁସାରେ ବିଭିନ୍ନ ବିଧି ବିଧାନର ଆଶ୍ରୟ ନେଇ ବିଭିନ୍ନ ଦେବତାଙ୍କୁ ଆରାଧନା କରନ୍ତି । ୨୦ ।

ଯେଉଁସବୁ ଭିନ୍ନ ଭିନ୍ନ ଲୋକ ଭିନ୍ନ ଭିନ୍ନ ସ୍ୱରୂପ ଅର୍ଥାତ୍ ଦେବତାମାନଙ୍କୁ ଶ୍ରଦ୍ଧାଭାବରେ ପୂଜା କରିବାକୁ ଇଚ୍ଛା କରନ୍ତି, ସେହି ଦେବତାମାନଙ୍କ ପ୍ରତି ସେମାନଙ୍କର ସେହି ଶ୍ରଦ୍ଧାଭାବକୁ ମୁଁ ଦୃଢ଼ କରିଦିଏ । ୨୧ ।

ଶ୍ରଦ୍ଧାପୂର୍ବକ ସେହି ସେହି ଦେବତାମାନଙ୍କୁ ସେମାନେ ଆରାଧନା କରନ୍ତି ଏବଂ ମୋ' ଦ୍ୱାରା ନିର୍ମିତ ହୋଇଥିବା ଫଳ ସେମାନଙ୍କୁ ସେମାନଙ୍କ ମନ ଅନୁସାରେ ମିଳେ । ୨୨ ।

ସେହି ଅଳ୍ପବୁଦ୍ଧି ଲୋକଙ୍କୁ ଯେଉଁ ଫଳ ମିଳେ ତାହା ନାଶଶୀଳ। ଦେବତାମାନଙ୍କୁ ଯେଉଁମାନେ ଭଜନ୍ତି ସେମାନେ ଦେବତାମାନଙ୍କୁ ପାନ୍ତି ଏବଂ ମୋତେ ଭଜିବା ଲୋକେ ମୋତେ ପାନ୍ତି । ୨୩ ।

ବୁଦ୍ଧିହୀନ ଲୋକେ ମୋର ଶ୍ରେଷ୍ଠ ଅବିନାଶୀ ଓ ଅନୁପମ ସ୍ୱରୂପକୁ ଜାଣି ନ ପାରି ମୁଁ ଇନ୍ଦ୍ରିୟାତୀତ ହୋଇଥିଲେ ମଧ୍ୟ ମୋତେ ଇନ୍ଦ୍ରିୟ-ଗମ୍ୟ ବୋଲି ମନେ କରନ୍ତି । ୨୪ ।

ମୁଁ ନିଜର ଯୋଗମାୟା ଦ୍ୱାରା ଆଚ୍ଛାଦିତ ହୋଇ ରହିଥିବା ହେତୁ ସମସ୍ତଙ୍କ ନିକଟରେ ପ୍ରକଟିତ ହୁଏନାହିଁ । ଏହି ମୂଢ଼ ଜଗତ ମୋର ଜନ୍ମଶୂନ୍ୟ ଓ ଅବ୍ୟୟ ସ୍ୱରୂପକୁ ଉତ୍ତମରୂପେ ଜାଣିପାରେ ନାହିଁ । ୨୫ ।

ଟିପ୍ପଣୀ :—ଏହି ଦୃଶ୍ୟ ଜଗତକୁ ସୃଷ୍ଟି କରିବାର ସାମର୍ଥ୍ୟ ଥାଇ ମଧ୍ୟ ନିର୍ଲିପ୍ତ ରହିଥିବା ହେତୁ ପରମାତ୍ମାଙ୍କର ଅଦୃଶ୍ୟ ରହିବାର ଯେ ଭାବ ତାହା ତାହାଙ୍କର ଯୋଗମାୟା ବୋଲି କଥିତ ।

ହେ ଅର୍ଜୁନ, ଯେ ଗଲେଣି, ଯେ ଅଛନ୍ତି ଏବଂ ପରେ ଯେ ହେବେ, ଏପରି ସମସ୍ତ ଭୂତମାନଙ୍କୁ ମୁଁ ଜାଣେ, କିନ୍ତୁ ମୋତେ କେହି ଜାଣନ୍ତି ନାହିଁ । ୨୬ ।

ହେ ଭାରତ, ହେ ପରନ୍ତପ, ଇଚ୍ଛା ଓ ଦ୍ୱେଷରୁ ଜାତ ସୁଖ ଦୁଃଖାଦି ଦ୍ୱନ୍ଦର ମୋହରେ ପଡ଼ି ପ୍ରାଣୀମାନେ ସମସ୍ତେ ଏହି ଜଗତରେ ମୋହରେ ପଡ଼ିଥାନ୍ତି । ୨୭ ।

କିନ୍ତୁ ଯେଉଁ ସଦାଚାରୀ ପୁରୁଷଙ୍କର ପାପ ସବୁ କ୍ଷୟିତ ହୋଇ ଯାଇଅଛି ଏବଂ ଯେ ସୁଖ ଦୁଃଖର ଦ୍ୱନ୍ଦରୁ ମୁକ୍ତ, ସେହି ଅଟଳ ବ୍ରତଧାରୀ ପୁରୁଷ କେବଳ ମୋତେ ଭଜନ୍ତି । ୨୮ ।

ଯେଉଁମାନେ ମୋର ଆଶ୍ରୟ ନେଇ ଜରା ଓ ମରଣରୁ ରାହି ପାଇବାକୁ ପ୍ରଯତ୍ନ କରନ୍ତି ସେମାନେ ପୂର୍ଣ୍ଣବ୍ରହ୍ମ, ଅଧ୍ୟାତ୍ମ ଏବଂ ଅଖିଳ କର୍ମକୁ ଜାଣନ୍ତି । ୨୯ ।

ମୁଁ ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ ଯୁକ୍ତ । ଏପରି ମୋତେ ଯେ ଜାଣିଛି ସେ ସମତ୍ୱକୁ ପାଇ ମରଣ ସମୟରେ ମଧ୍ୟ ମୋତେ ଦର୍ଶନ କରନ୍ତି । ୩୦ ।

ଟିପ୍ପଣୀ—ଅଧିଭୂତାଦିର ଅର୍ଥ ଅଷ୍ଟମ ଅଧ୍ୟାୟରେ ଅଛି । ଏହି ଶ୍ଲୋକର ଅର୍ଥ ଏହି ଯେ ଜଗତରେ ଈଶ୍ୱରଙ୍କୁ ଛାଡ଼ି ଅନ୍ୟ କିଛି ନାହିଁ । ସମସ୍ତ କର୍ମର କର୍ତ୍ତା ଓ ଭୋକ୍ତା ଈଶ୍ୱର ଅଟନ୍ତି । ଏପରି ଜାଣି ମରଣ ସମୟରେ ଯେ ସ୍ଥିରଚିତ୍ତ ହୋଇ ଈଶ୍ୱରଙ୍କଠାରେ ତନ୍ମୟ ରହି ପାରନ୍ତି ଏବଂ ସେହି ସମୟରେ ଯାହାଙ୍କର ଅନ୍ୟ କିଛି ବାସନା ନଥାଏ, ସେହି ବ୍ୟକ୍ତି ଈଶ୍ୱରଙ୍କୁ ଦର୍ଶନ କରି ମୋକ୍ଷ ଲାଭ କରନ୍ତି ।

ଓଁ ତତ୍‌ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତା ରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦରେ ଜ୍ଞାନ ବିଜ୍ଞାନ ଯୋଗ ନାମକ ସପ୍ତମ ଅଧ୍ୟାୟର ସମାପ୍ତି ।



( ୮ )

# ଅକ୍ଷର ବ୍ରହ୍ମ ଯୋଗ

ଏହି ଅଧ୍ୟାୟରେ ଈଶ୍ୱରତତ୍ତ୍ୱକୁ ବିଶେଷ ଭାବରେ ବୁଝା ହୋଇଛି ।

ଅର୍ଜ୍ଜୁନ କହିଲେ—ହେ ପୁରୁଷୋତ୍ତମ, ଏହି ବ୍ରହ୍ମଙ୍କର ସ୍ୱରୂପ କଣ ? ଅଧ୍ୟାତ୍ମ କାହାକୁ କହନ୍ତି ? କର୍ମ କଣ ? ଅଧିଭୂତ କାହାକୁ କହନ୍ତି ? ଅଧିଦୈବ କାହାକୁ ବୁଝାଯାଏ ? ୧ ।

ହେ ମଧୁସୂଦନ, ଏହି ଦେହରେ ଅଧିଯଜ୍ଞ କାହାକୁ କହନ୍ତି ଏବଂ ସେ କି ପ୍ରକାର ? ମୃତ୍ୟୁ ସମୟରେ ସଂଯମୀ ଲୋକ ଆପଣାକୁ କିପରି ଜାଣିପାରେ ? ୨ ।

ଶ୍ରୀ ଭଗବାନ କହିଲେ—ଯେ ସର୍ବୋତ୍ତମ, ଅବିନାଶୀ ତାହା ବ୍ରହ୍ମ । ପ୍ରାଣୀମାନଙ୍କ ଭିତରେ ନିଜ ଗୁଣରେ ଯାହା ରହିଅଛି ତାହାକୁ ଅଧ୍ୟାତ୍ମ ବୁହାଯାଏ । ପ୍ରାଣୀମାନଙ୍କୁ ଉତ୍ପତ୍ତି କରିବାର ଯେଉଁ ସୃଷ୍ଟି ବ୍ୟାପାର ତାହାକୁ କର୍ମ କହନ୍ତି । ୩ ।

ମୋର ନାଶଶୀଳ ସ୍ୱରୂପ ଅଧିଭୂତ ଅଟେ । ଅଧିଦୈବତ କହିଲେ ତହିଁ ଭିତରେ ଥିବା ମୋର ଜୀବ ସ୍ୱରୂପକୁ ବୁଝାଏ । ହେ ମନୁଷ୍ୟ-

ଶ୍ରେଷ୍ଠ, ଏହି ଦେହ ଭିତରେ ଥିବା ପୁଣି ଯଜ୍ଞଦ୍ୱାରା ପବିତ୍ର ହୋଇଥିବା ଜୀବ ସ୍ୱରୂପ ବିଷୟ ଅଧିଯଜ୍ଞ । ୪ ।

ଟିପ୍ପଣୀ—ପ୍ରକୃତ କଥା ଏହି ଯେ ଅବ୍ୟକ୍ତ ବ୍ରହ୍ମଙ୍କଠାରୁ ଆରମ୍ଭ କରି ନାଶଶୀଳ ଦୃଶ୍ୟ ପଦାର୍ଥ ପର୍ଯ୍ୟନ୍ତ ସମସ୍ତ 'ପରମାତ୍ମା' ସତ୍ୟ ଏବଂ ଏହି ସମସ୍ତ ତାହାଙ୍କର କୃତି ଅଟେ । ଅତଏବ ମନୁଷ୍ୟ ନିଜ ଭିତରେ କର୍ତ୍ତା ଭାବରେ ଅଭିମାନ ନ ରଖି ପରମାତ୍ମାଙ୍କର ଦାସ ହୋଇ ତାହାଙ୍କଠାରେ ସମସ୍ତ ସମର୍ପଣ କରିବା ଉଚିତ ନୁହେ କି ?

ଅନ୍ତକାଳରେ ମୋତେ ସ୍ମରଣ କରି କରି ଯେ ବ୍ୟକ୍ତି ଶରୀର ତ୍ୟାଗ କରେ ସେ ମୋ' ସ୍ୱରୂପରେ ମିଳିଯାଏ, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । ୫ ।

ଅଥବା ହେ କୌନ୍ତେୟ, ପ୍ରତିଦିନ ମନୁଷ୍ୟ ଯେଉଁ ଯେଉଁ ବିଷୟ ଚିନ୍ତା କରୁଥାଏ ମରଣ କାଳରେ ସେହି ସେହି ବିଷୟକୁ ଚିନ୍ତାକରି ଦେହ ଛାଡ଼ିଲେ ସେ ସେହି ସ୍ୱରୂପକୁ ଲାଭ କରେ । ୬ ।

ଅତଏବ ସର୍ବଦା ତୁମ୍ଭେ ମୋତେ ସ୍ମରଣ କରି ଯୁଦ୍ଧ କର । ଏହିପରି ମୋ'ଠାରେ ମନ ଓ ବୁଦ୍ଧିକୁ ଅର୍ପଣ କରିପାରିଲେ ମୋତେ ଅବଶ୍ୟ ପାଇପାରିବ । ୭ ।

ହେ ପାର୍ଥ, ଚିତ୍ତକୁ ଇତସ୍ତତଃ ନ କରି, ଅଭ୍ୟାସଦ୍ୱାରା ସ୍ଥିର ରଖି ଯେ ଏକ ଧ୍ୟାନରେ ରହି ପାରନ୍ତି ସେ ଦିବ୍ୟ ପୁରୁଷଙ୍କୁ ପ୍ରାପ୍ତ ହୁଅନ୍ତି । ୮ ।

ଯେଉଁ ମନୁଷ୍ୟ ମରଣ କାଳରେ ମନକୁ ଅଟଳ ରଖି ଭକ୍ତି ଭାବରେ ଯୋଗବଳଦ୍ୱାରା ପ୍ରାଣକୁ ଭ୍ରୂଲତାର ମଧ୍ୟସ୍ଥଳରେ ଉତ୍ତମରୂପେ ସ୍ଥାପନ କରି ସର୍ବଜ୍ଞ, ପୁରାତନ, ନିୟନ୍ତା, ସୂକ୍ଷ୍ମତମ, ସମସ୍ତଙ୍କର ପାଳନକର୍ତ୍ତା, ଅଚିନ୍ତ୍ୟ, ସୂର୍ଯ୍ୟଙ୍କ ପରି ତେଜୋମୟ ଓ

ଅଜ୍ଞାନରୂପକ ଅନ୍ଧକାରର ଅତୀତ ଏମନ୍ତ ସ୍ୱରୂପକୁ ଠିକ୍‌ରୂପେ ସ୍ମରଣ କରି ପାରନ୍ତି ସେ ସେହି ଦିବ୍ୟ ପରମ ପୁରୁଷଙ୍କୁ ଲାଭ କରନ୍ତି ।୯,୧୦।

ବେଦଜ୍ଞ ପଣ୍ଡିତମାନେ ଯାହାକୁ ଅକ୍ଷର ବୋଲି ବର୍ଣ୍ଣନା କରି ଅଛନ୍ତି, ସଂସାରରେ ଅସକ୍ତିଶୂନ୍ୟ ମୁନିମାନେ ଯହିଁରେ ପ୍ରବେଶ କରନ୍ତି ଏବଂ ଯାହାଙ୍କୁ ପାଇବାକୁ ଇଚ୍ଛା କରି ଲୋକେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ସେହି ପଦର ସଂକ୍ଷିପ୍ତ ବିବରଣୀ ମୁଁ ତୁମକୁ କହିବି ।୧୧।

ଇନ୍ଦ୍ରିୟମାନଙ୍କର ସବୁ ଦ୍ୱାରକୁ ରୁଦ୍ଧ କରି, ମନକୁ ହୃଦୟ ମଧ୍ୟରେ ସ୍ଥିର ରଖି, ପ୍ରାଣକୁ ମସ୍ତକରେ ଧାରଣ କରି, ସମାଧିସ୍ଥ ହୋଇ, ଏକାକ୍ଷର ବ୍ରହ୍ମ "ଓଁ"କୁ ଜପୁ ଜପୁ ଏବଂ ମୋତେ ଚିନ୍ତା କରୁ କରୁ ଯେ ଦେହତ୍ୟାଗ କରନ୍ତି ସେହି ବ୍ୟକ୍ତି ପରମ ଗତି ଲାଭ କରନ୍ତି । ୧୨,୧୩ ।

ହେ ପାର୍ଥ, ଅନ୍ୟ କୌଣସିଠାରେ ଚିତ୍ତ ନ ରଖି ଯେ ନିରନ୍ତର ମୋତେ ସ୍ମରଣ କରୁଥାନ୍ତି, ସେହି ନିତ୍ୟଯୁକ୍ତ ଯୋଗୀ ମୋତେ ଅକ୍ଳେଶରେ ଲାଭ କରନ୍ତି । ୧୪ ।

ମୋତେ ପାଇ ପରମ ଗତି ଲାଭ କରିଥିବା ମହାତ୍ମାମାନେ, ଦୁଃଖର ଘର ସ୍ୱରୂପ ଏଭଳି ଅଶାଶ୍ୱତ ପୁନର୍ଜନ୍ମ ଆଉ ପାନ୍ତି ନାହିଁ । ୧୫ ।

ହେ କୌନ୍ତେୟ, ବ୍ରହ୍ମଲୋକ ପର୍ଯ୍ୟନ୍ତ ଯେତେ ଲୋକ ଅଛି, ସେଠାରୁ ବାରମ୍ବାର ଫେରିବାକୁ ପଡେ । କିନ୍ତୁ ମୋତେ ପାଇଗଲେ ଆଉ ଫେରିବାକୁ ହୁଏ ନାହିଁ । ୧୬ ।

ହଜାର ଯୁଗରେ ବ୍ରହ୍ମାଙ୍କର ଗୋଟିଏ ଦିନ ଏବଂ ହଜାର ଯୁଗରେ ଗୋଟିଏ ରାତି ହୁଏ । ଏହାକୁ ଯେ ଜାଣନ୍ତି ସେ ଅହୋରାତ୍ର ବୁଝିଛନ୍ତି । ୧୭ ।

ଟିପ୍ପଣୀ—ଯଥାର୍ଥ ବୁଝିବାରେ ଚବିଶ ଘଣ୍ଟାରେ ଆମ୍ଭର ଯେ ରାତ୍ରି ଦିବସ ହୁଏ, ତାହା କାଳଚକ୍ରର ଏକ କ୍ଷଣଠାରୁ ମଧ୍ୟ ଅଳ୍ପ । ଏହାର କିଛି ମୂଲ୍ୟ ନାହିଁ । ଅତଏବ ଏହି ସମୟ ମଧ୍ୟରେ ଯେଉଁ ବିଷୟ ସୁଖ ମିଳେ ତାହାକୁ ଆକାଶକୁସୁମ ପରି ନିରର୍ଥକ ମନେକରି ତାହା ପ୍ରତି କୌଣସି ଆସ୍ଥା ରଖିବା ଉଚିତ ନୁହେଁ । ଯେତେ ଅଳ୍ପ ସମୟ ଆମ୍ଭମାନଙ୍କର ଅଛି ସେତିକ ଭଗବଦ୍‌ଭକ୍ତିରେ ଓ ସେବା କାର୍ଯ୍ୟରେ ଲଗାଇ ସାର୍ଥକ କରିବା ଉଚିତ । ତାହା ସଙ୍ଗେ ସଙ୍ଗେ ଆତ୍ମଦର୍ଶନ ଲାଭ ନ କଲେ ମଧ୍ୟ ଧୈର୍ଯ୍ୟ ଧରି ରହିବାକୁ ହେବ ।

ବ୍ରହ୍ମଦେବଙ୍କର ଦିନ ଆରମ୍ଭ ହେଲେ ଅଦୃଶ୍ୟରୁ ସମସ୍ତ ଦୃଶ୍ୟ ପଦାର୍ଥ ସୃଷ୍ଟି ହୁଏ । ରାତ୍ରି ହେଲେ ସେମାନଙ୍କର ପ୍ରଳୟ ହୁଏ; ଅର୍ଥାତ୍ ସେମାନେ ପୁଣି ସେହି ଅଦୃଶ୍ୟରେ ଲୀନ ହୋଇଯାନ୍ତି । ୧୮ ।

ଟିପ୍ପଣୀ—ଏହି ନିୟମକୁ ଜାଣି ମଧ୍ୟ ମନୁଷ୍ୟର ବୁଝିବା ଉଚିତ ଯେ, ତାହା ହାତରେ ଅତି ଅଳ୍ପ ଅଧିକାର ଅଛି । ଉତ୍ପତ୍ତି ଓ ନାଶ ଦୁହେଁ ଏକ ସଙ୍ଗେ ଚାଲି ଅଛନ୍ତି ।

ହେ ପାର୍ଥ, ସମୁଦାୟ ପ୍ରାଣୀ-ଜଗତ୍ ଏହିପରି ବାରମ୍ବାର ଜନ୍ମଗ୍ରହଣ କରି ରାତ୍ରି ହେଲେ ଲୟ ପାଉଅଛନ୍ତି, ଦିନ ହେଲେ ପୁଣି ଜାତ ହେଉ ଅଛନ୍ତି । ୧୯ ।

କିନ୍ତୁ ଏହି ଅଦୃଶ୍ୟ ଉପରେ ଅନ୍ୟ ଏକ ସନାତନ ଅବ୍ୟକ୍ତ ଭାବ ଅଛି । ସମସ୍ତ ପ୍ରାଣୀ ନାଶ ପାଇଲେ ମଧ୍ୟ ସେହି ସନାତନ ଅବ୍ୟକ୍ତ ଭାବ ନାଶ ପାଏ ନାହିଁ । ୨୦ ।

ଯେଉଁ ଅବ୍ୟକ୍ତ ଅକ୍ଷର ( ଅବିନାଶୀ ) ବୋଲି କଥିତ ତାହାଙ୍କୁ ପରମ ଗତି କୁହାଯାଏ । ଯାହାଙ୍କୁ ପାଇଲା ପରେ ମନୁଷ୍ୟର ପୁନର୍ଜନ୍ମ ହୁଏ ନାହିଁ ତାହାହିଁ ମୋର ପରମ ଧାମ । ୨୧ ।

ହେ ପାର୍ଥ, ଏକ ଚିତ୍ତରେ ଭକ୍ତି କରିବାଦ୍ୱାରା କେବଳ ଏହି ପରମପୁରୁଷଙ୍କର ଦର୍ଶନ ଲାଭ ହୁଏ । ଏହାଙ୍କ ଭିତରେ ଭୂତଗଣ ରହି ଅଛନ୍ତି ଏବଂ ଏମାନେ ମଧ୍ୟ ତାହାଙ୍କଦ୍ୱାରା ବ୍ୟାପ୍ତ ହୋଇ ଅଛନ୍ତି । ୨୨ ।

ହେ ଭରତଶ୍ରେଷ୍ଠ, ଯେଉଁ ସମୟରେ ମୃତ୍ୟୁ ଘଟିଲେ ଯୋଗୀମାନେ ମୋକ୍ଷ ପାନ୍ତି ଏବଂ ଯେଉଁ ସମୟରେ ମୃତ୍ୟୁ ହୋଇଲେ ସେମାନଙ୍କର ପୁନର୍ଜନ୍ମ ହୁଏ, ସେହି କାଳ ବିଷୟ ମୁଁ ତୁମ୍ଭଙ୍କୁ କହୁଅଛି । ୨୩ ।

ଉତ୍ତରାୟଣର ଛଅମାସ ଭିତରେ ଶୁକ୍ଳ ପକ୍ଷରେ ଦିବସର ଯେଉଁ ସମୟରେ ଅଗ୍ନି ଜ୍ୱାଳାଗତ କରୁଥାଏ, ସେହି ସମୟରେ ଯାହାଙ୍କର ମୃତ୍ୟୁ ହୁଏ ସେହି ବ୍ରହ୍ମବିଦ୍ ପୁରୁଷ ବ୍ରହ୍ମ ଲାଭ କରନ୍ତି । ୨୪ ।

ଦକ୍ଷିଣାୟନର ଛଅମାସ ଭିତରେ କୃଷ୍ଣପକ୍ଷ ରାତ୍ରିରେ ଘୋର ଅନ୍ଧକାର ବେଳେ ଯାହାଙ୍କର ମୃତ୍ୟୁ ହୁଏ ସେ ଚନ୍ଦ୍ରଲୋକକୁ ପାଇ ପୁଣି ଜନ୍ମଗ୍ରହଣ କରନ୍ତି । ୨୫ ।

ଟିପ୍ପଣୀ—ଉପର ଦୁଇଟି ଶ୍ଳୋକକୁ ମୁଁ ଭଲକରି ବୁଝି ପାରୁ ନାହିଁ । ଏହାର ଶବ୍ଦାର୍ଥ ଗୀତାର ଶିକ୍ଷା ସହିତ ମେଳ ଖାଉନାହିଁ । ଗୀତାର ଶିକ୍ଷା ପ୍ରମାଣେ ଯାହାଙ୍କର ଭକ୍ତିଭାବ ଅଛି, ଯେ ସେ ସେବାବ୍ରତକୁ ଅବଲମ୍ବନ କରି ଅଛନ୍ତି, ଯେ ଜ୍ଞାନ ଲାଭ କରି ଅଛନ୍ତି, ସେହି ବ୍ୟକ୍ତି ଯେ କୌଣସି କାଳରେ ମଲେ ମଧ୍ୟ ମୋକ୍ଷଲାଭ ତାଙ୍କ ପକ୍ଷରେ ନିଶ୍ଚିତ ଅଟେ । ଏହା ସହିତ ଉପର ଦୁଇ ଶ୍ଳୋକର ଶବ୍ଦାର୍ଥ ବିରୋଧୀ ଅଟେ । ଏଥିରୁ ଏପରି ଭାବାର୍ଥ ଅବଶ୍ୟ ବାହାର ପାରେ କି, ଯେ ଯଜ୍ଞ କରନ୍ତି, ଅର୍ଥାତ୍ ପରୋପକାରରେ ଜୀବନକୁ ଅତିବାହିତ କରି ଅଛନ୍ତି, ଯେ ଜ୍ଞାନ ଲାଭ କରିଛନ୍ତି, ଯେ ବ୍ରହ୍ମଙ୍କୁ ଚିହ୍ନିଛନ୍ତି,

ଅର୍ଥାତ୍ ଜ୍ଞାନୀ ଅଟନ୍ତି, ମୃତ୍ୟୁ ସମୟରେ ତାହାଙ୍କର ଏହି ବଳ ସ୍ଥିତି ସ୍ଥିର ରହିପାରେ ତେବେ ସେ ଅବଶ୍ୟ ମୋକ୍ଷ ଲାଭ କରନ୍ତି । ଏହାର ବିପରୀତ—ଯେ ଯଜ୍ଞ କରନ୍ତି ନାହିଁ, ଯାହାଙ୍କର ଜ୍ଞାନ ନାହିଁ କିମ୍ବା ଯେ ଭକ୍ତିଭାବ କ'ଣ ଜାଣନ୍ତି ନାହିଁ, ସେ ଚନ୍ଦ୍ର-ଲୋକ ଅର୍ଥାତ୍ ଅସ୍ଥାୟୀ ଲୋକକୁ ପାଇ ପୁଣି ଭବଚକ୍ରକୁ ଫେରି ଆସନ୍ତି । ଚନ୍ଦ୍ରଙ୍କର ନିଜର ଜ୍ୟୋତି ନାହିଁ ।

ଜଗତରେ ଜ୍ଞାନ ଓ ଅଜ୍ଞାନର ଏହିପରି ଦୁଇଟି ସ୍ଥିରମାର୍ଗ ପରମ୍ପର ଜମେ ରହିଅଛି । ଗୋଟିକରେ ଅର୍ଥାତ୍ ଜ୍ଞାନ ମାର୍ଗରେ ମନୁଷ୍ୟ ମୋକ୍ଷଲାଭ କରେ ଏବଂ ଅନ୍ୟଟିରେ ଅର୍ଥାତ୍ ଅଜ୍ଞାନ ମାର୍ଗରେ ସେ ପୁନର୍ଜନ୍ମ ପାଏ । ୨୬ ।

ହେ ପାର୍ଥ, ଏହି ଦୁଇଟି ମାର୍ଗର କଥା ଯେ ଜାଣିଛନ୍ତି ସେ କଦାପି ମୋହବଶ ହୁଅନ୍ତି ନାହିଁ । ଅତଏବ ହେ ଅର୍ଜୁନ, ତୁମେ ନିରନ୍ତର ଯୋଗଯୁକ୍ତ ହୋଇ ରହ । ୨୭ ।

ଟିପ୍ପଣୀ—ଦୁଇଟି ମାର୍ଗକୁ ଜାଣିଥିବା ବ୍ୟକ୍ତି ଏବଂ ସମଭାବ ରଖିବା ବ୍ୟକ୍ତି ଅନ୍ଧକାର ଅର୍ଥାତ୍ ଅଜ୍ଞାନ ମାର୍ଗରେ ପଡ଼େ ନାହିଁ । ଏହାର ଅର୍ଥ ମୋହରେ ନ ପଡ଼ିବା ।

ଏ ରହସ୍ୟକୁ ଜାଣିଲା ପରେ ବେଦ, ଯଜ୍ଞ, ତପ ଓ ଦାନରେ ଯେଉଁ ପୁଣ୍ୟଫଳ କଥା କୁହାଯାଇ ଅଛି, ସେ ସମସ୍ତକୁ ଅତିକ୍ରମ କରି ଯୋଗୀ ଉତ୍ତମ ଆଦ୍ୟ ସ୍ଥାନକୁ ପା'ନ୍ତି । ୨୮ ।

ଟିପ୍ପଣୀ—ଅତଏବ ଯେ ଜ୍ଞାନ, ଭକ୍ତି ଓ ସେବା କର୍ମଦ୍ୱାରା ସମଭାବ ଲାଭ କରିଛନ୍ତି ତାହାଙ୍କୁ ସମସ୍ତ ପୁଣ୍ୟଫଳ ମିଳିଯାଏ । କେବଳ ଏତିକି ନୁହେଁ ତାହାଙ୍କୁ ମଧ୍ୟ ପରମ ମୋକ୍ଷ ପଦ ମିଳେ ।

ଓଁ ତତ୍ ସତ୍ ।

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତା ରୂପକ ଉପନିଷଦରେ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗ ଶାସ୍ତ୍ରର ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦର ଅକ୍ଷର ବ୍ରହ୍ମଯୋଗ ନାମକ ଅଷ୍ଟମ ଅଧ୍ୟାୟର ସମାପ୍ତି ।

---

( ୯ )

## ରାଜବିଦ୍ୟା ରାଜଗୁହ୍ୟ ଯୋଗ

ଏହି ଅଧ୍ୟାୟରେ ଭକ୍ତିର ମହିମା ଗାନ କରାଯାଇ ଅଛି ।

ଶ୍ରୀ ଭଗବାନ କହିଲେ—ତୁମ୍ଭଠାରେ ଅଳ୍ପ କିଛି ଦୋଷ ନାହିଁ । ତେଣୁ ତୁମ୍ଭକୁ ମୁଁ ଅନୁଭବଯୁକ୍ତ ଓ ଅତିଗୁହ୍ୟ ଏପରି ଗୋଟିଏ ଜ୍ଞାନର କଥା କହିବି, ଯାହା ଜାଣିଲେ ତୁମ୍ଭେ ସମସ୍ତ ଅକଲ୍ୟାଣରୁ ରକ୍ଷା ପାଇବ । ୧ ।

ଏହା ବିଦ୍ୟାମାନଙ୍କ ମଧ୍ୟରେ ରାଜା, ସମସ୍ତ ଗୂଢ଼ ବିଷୟ ମଧ୍ୟରେ ମଧ୍ୟ ଶ୍ରେଷ୍ଠ ଅଟେ । ଏହି ବିଦ୍ୟା ପବିତ୍ର, ଉତ୍ତମ ଓ ପ୍ରତ୍ୟକ୍ଷ ଅନୁଭବ ଯୋଗ୍ୟ ଅଟେ । ଏହା ଧାର୍ମିକ ପାଳନ କରିବାକୁ ମଧ୍ୟ ସହଜ ଏବଂ ଅବିନାଶୀ ଅଟେ । ୨ ।

ହେ ପରନ୍ତପ, ଏହି ଧର୍ମ ଉପରେ ଯେଉଁମାନଙ୍କର ଶ୍ରଦ୍ଧା ନ ଥାଏ, ସେମାନେ ମୋତେ ନ ପାଇ ବାରମ୍ବାର ଏହି ମୃତ୍ୟୁମୟ ସଂସାରକୁ ଲେଉଟନ୍ତି । ୩ ।

ମୋର ଅବ୍ୟକ୍ତ ସ୍ୱରୂପଦ୍ୱାରା ସମଗ୍ର ବିଶ୍ୱ ଜଗତ ଆବୃତ । ସମସ୍ତ ପ୍ରାଣୀ ମୋ' ଭିତରେ ଅଛନ୍ତି, ମାତ୍ର ମୁଁ ସେମାନଙ୍କ ଭିତରେ ନାହିଁ ।୪।

ପୁଣି ମୋ' ଭିତରେ ସବୁ ପ୍ରାଣୀ ନାହାନ୍ତି ଏହା ମଧ୍ୟ କୁହାଯାଇ ପାରେ । ମୋର ଏହି ଯୋଗବଳକୁ ତୁମ୍ଭେ ଦେଖ । ମୁଁ ଜୀବମାନଙ୍କର ପାଳନକର୍ତ୍ତା, ଅଥଚ ସେମାନଙ୍କ ଭିତରେ ନ ଥାଏ, କିନ୍ତୁ ମୁଁ ସେମାନଙ୍କର ଉତ୍ପତ୍ତିର କାରଣ ଅଟେ । ୫ ।

ଟିପ୍ପଣୀ—ମୋ' ଠାରେ ଜୀବମାନେ ଅଛନ୍ତି ପୁଣି ନାହାନ୍ତି । ସେମାନଙ୍କ ଭିତରେ ମୁଁ ଅଛି ପୁଣି ନାହିଁ। ଏହା ଈଶ୍ୱରଙ୍କର ଯୋଗବଳ, ତାହାଙ୍କର ମାୟା ଏବଂ ତାହାଙ୍କର ବିଶେଷତ୍ୱ ।

ଈଶ୍ୱରଙ୍କର ବର୍ଣ୍ଣନା ଭଗବାନଙ୍କୁ ମଧ୍ୟ ମନୁଷ୍ୟଭାଷାରେ ହିଁ କରିବାକୁ ଉଚିତ ବୋଧ ହୋଇଅଛି । ତେଣୁ ନାନା ପ୍ରକାର ଭାଷା ପ୍ରୟୋଗ କରି ତାହାଙ୍କୁ ( ଈଶ୍ୱରଙ୍କୁ ) ସନ୍ତୋଷ କରିଅଛନ୍ତି । ସମସ୍ତ ଈଶ୍ୱରମୟ । ଏଣୁ ସମସ୍ତ ତାହାଙ୍କ ଭିତରେ । କିନ୍ତୁ ସେ ନିର୍ଲିପ୍ତ । ସେ ପ୍ରାକୃତ କର୍ତ୍ତା ନୁହନ୍ତି । ତେଣୁ ତାଙ୍କ ଭିତରେ ପ୍ରାଣୀମାନେ ନାହାନ୍ତି ବୋଲି କୁହାଯାଇ ପାରେ । ମାତ୍ର ଯେ ତାଙ୍କର ଭକ୍ତ ତାହା ଭିତରେ ଭଗବାନ ନିଶ୍ଚୟ ଅଛନ୍ତି । ମାତ୍ର ନାସ୍ତିକ ମନେକରେ ଯେ ଭଗବାନ ତାହା ଭିତରେ ନାହାନ୍ତି । ଏହା ତାହାଙ୍କର ବୈଚିତ୍ର୍ୟ ନୁହେଁ ତ ଆଉ କ'ଣ ?

ଯେପରି ସର୍ବତ୍ର ବିଚରଣ କରୁଥିବା ମହାନ୍ ବାୟୁ ନିତ୍ୟ ଆକାଶରେ ବିଦ୍ୟମାନ, ସେହିପରି ସମସ୍ତ ପ୍ରାଣୀ ମୋଭିତରେ ବିଦ୍ୟମାନ ଅଛନ୍ତି; ଏହା ତୁମ୍ଭେ ଜାଣିଥାଅ । ୬ ।

ହେ କୌନ୍ତେୟ, କଳ୍ପକ୍ଷୟ ହେଲେ ସମସ୍ତ ପ୍ରାଣୀ ମୋର ପ୍ରକୃତିରେ ଲୟ ପାନ୍ତି । କଳ୍ପ ଅରମ୍ଭ ହେଲେ ମୁଁ ପୁଣି ସେମାନଙ୍କ ସର୍ଜନା କରେ । ୭ ।

ମୁଁ ନିଜର ମାୟାବଳରେ ପ୍ରକୃତିବଶ ସମୁଦାୟ ପ୍ରାଣିଜଗତକୁ ବାରମ୍ବାର ସୃଷ୍ଟି କରେ । ୮ ।

ହେ ଧନଞ୍ଜୟ, ଏହି କର୍ମ ମୋତେ ବନ୍ଧନ କରେ ନାହିଁ, କାରଣ ମୁଁ ସେ ବିଷୟରେ ଉଦାସୀନ ଏବଂ ଅସକ୍ତିଶୂନ୍ୟ ହୋଇ ରହିଥାଏ । ୯ ।

ପ୍ରକୃତି ମୋର ଅଧୀନ ହୋଇ ଏହି ସ୍ଥାବର ଜଙ୍ଗମ ସୃଷ୍ଟିକୁ ନିର୍ମାଣ କରେ । ଏହି କାରଣରୁ ହେ କୌନ୍ତେୟ, ଏହି ଜଗତ ଘଟମାଳା ପରି ବାରମ୍ବାର ଘୂରୁଅଛି । ୧୦ ।

ମୁଁ ସମସ୍ତ ପ୍ରାଣୀଙ୍କର ପରମେଶ୍ୱର । ମୂଢମାନେ ମୋର ଏହି ଭାବକୁ ନ ଜାଣି ମୋତେ ମନୁଷ୍ୟ-ତନୁଧାରୀ ମନେକରି ମୋତେ ଅବହେଳା କରନ୍ତି । ୧୧ ।

ଟିପ୍ପଣୀ—କାରଣ ଯେଉଁମାନେ ଈଶ୍ୱରଙ୍କ ସତ୍ତାକୁ ସ୍ୱୀକାର କରନ୍ତି ନାହିଁ, ସେମାନେ ଦେହ ଭିତରେ ଅବସ୍ଥିତ ଅନ୍ତର୍ଯାମୀଙ୍କୁ ଜାଣିପାରନ୍ତି ନାହିଁ । ତାହାଙ୍କର ଅସ୍ତିତ୍ୱକୁ ସ୍ୱୀକାର ନ କରିବା କାରଣରୁ ଜଡ଼ବାଦୀ ହୋଇ ରହନ୍ତି ।

ଯେଉଁମାନେ ବୃଥା ଆଶା ରଖନ୍ତି, ବୃଥା କର୍ମ କରନ୍ତି ଏବଂ ଯାହାଙ୍କର ଜ୍ଞାନ ମଧ୍ୟ ବୃଥା, ସେହି ମୂଢମାନେ ମୋହରେ ପକାଇବା ଭଳି ରାକ୍ଷସୀ ତଥା ଆସୁରୀ ପ୍ରକୃତିର ଆଶ୍ରୟ ଅବଲମ୍ବନ କରନ୍ତି । ୧୨ ।

ଏହାର ଓଲଟା, ହେ ପାର୍ଥ, ସାଧୁମାନେ ଦୈବୀ ପ୍ରକୃତିର ଆଶ୍ରୟ ଗ୍ରହଣ କରି, ମୋତେ ପ୍ରାଣୀମାନଙ୍କର ମୂଳକର୍ତ୍ତା ଓ ଅବିନାଶୀ ବୋଲି ଜାଣି ଏକନିଷ୍ଠ ଭାବରେ ଭଜନ କରନ୍ତି । ୧୩ ।

ଦୃଢ଼ନିଶ୍ଚୟବାନ୍ ଏବଂ ଯତ୍ନଶୀଳ ଲୋକେ ନିରନ୍ତର ମୋର କୀର୍ତ୍ତନ କରନ୍ତି, ଭକ୍ତି ସହକାରେ ମୋତେ ନମସ୍କାର କରନ୍ତି ଏବଂ ଅବିରତ ମୋତେ ଧ୍ୟାନକରି ମୋର ଉପାସନା କରନ୍ତି । ୧୪ ।

କେହି କେହି ଅଦ୍ୱୈତ କିମ୍ବା ଦ୍ୱୈତରୂପରେ ଅଥବା ବହୁରୂପରେ, ସର୍ବବ୍ୟାପୀ ମୋତେ ଜ୍ଞାନଦ୍ୱାରା ପୂଜା କରନ୍ତି । ୧୫ ।

ଯଜ୍ଞର ସଂକଳ୍ପ 'ମୁଁ', ଯଜ୍ଞ 'ମୁଁ', ଯଜ୍ଞରେ ପିତୃଲୋକଙ୍କୁ ଅର୍ପଣ କରାଯିବା ଅନ୍ନ ମଧ୍ୟ 'ମୁଁ', ଯଜ୍ଞର ବନସ୍ପତି 'ମୁଁ', ମନ୍ତ୍ର 'ମୁଁ', ଆହୂତି 'ମୁଁ', ଅଗ୍ନି 'ମୁଁ', ଏବଂ ହୋମ କରିବା ଦ୍ରବ୍ୟ ମଧ୍ୟ 'ମୁଁ' ଅଟେ । '୬ ।

ଏହି ଜଗତର ମୁଁ ପିତା, ମୁଁ ମାତା, ମୁଁ ପାଳନ କର୍ତ୍ତା ଏବଂ ମୁଁ ପିତାମହ ମଧ୍ୟ ଅଟେ । ଜାଣିବାଯୋଗ୍ୟ ବିଷୟ ଯାହା ଅଛି ତାହା ମୁଁ । ମୁଁ ମଧ୍ୟ ପବିତ୍ର ଓଁକାର ଶବ୍ଦ ଅଟେ । ଋଗ୍ବେଦ, ସାମବେଦ, ଯଜୁର୍ବେଦ ମଧ୍ୟ ମୁଁ ଅଟେ । ୧୭ ।

ମୁଁ ଏହି ଜଗତର ଗତି, ପୋଷଣ କର୍ତ୍ତା, ପ୍ରଭୁ, ସାକ୍ଷୀ, ନିବାସ, ଆଶ୍ରୟ, ଶୁଭକାଙ୍କ୍ଷୀ, ଉତ୍ପତ୍ତି, ପ୍ରଳୟ, ସ୍ଥିତି, ଭଣ୍ଡାର ଓ ଅବ୍ୟୟ ବୀଜ ଅଟେ । ୧୮ ।

ମୁଁ ଖରା କରାଉଅଛି, ବର୍ଷା କରାଉଅଛି, ଏହି ବର୍ଷାକୁ ମୁଁ ମଧ୍ୟ ବନ୍ଦ କରାଉ ଅଛି । ଅମରତ୍ୱ ମୁଁ, ମୁଁ ପୁଣି ମୃତ୍ୟୁ । ହେ ଅର୍ଜୁନ, ସତ୍ ଓ ଅସତ୍ ମଧ୍ୟ ମୁଁ । ୧୯ ।

ଯେଉଁମାନେ ତିନିବେଦରେ ଲେଖାଥିବା କର୍ମ କରନ୍ତି, ଏବଂ ସୋମରସ ପାନକରି ପାପମୁକ୍ତ ହୋଇ ଯଜ୍ଞଦ୍ୱାରା ମୋତେ ପୂଜାକରି ସ୍ୱର୍ଗ କାମନା କରନ୍ତି, ସେମାନେ ପବିତ୍ର ଦେବ ଲୋକକୁ ପାଇ ସ୍ୱର୍ଗରେ ଅନେକ ପ୍ରକାର ଦିବ୍ୟଭୋଗ କରନ୍ତି । ୨୦ ।

ଟିପ୍ପଣୀ—କେବଳ ଫଳ ପ୍ରାପ୍ତି ଇଚ୍ଛାରେ ବୈଦିକ କ୍ରିୟା ସବୁ କରାଯାଉଥିଲା । ତନ୍ମଧ୍ୟରୁ କେତେକ କ୍ରିୟାରେ ଅର୍ଯ୍ୟମାନେ ସୋମରସ ପାନ କରୁଥିଲେ । ତାହାହିଁ ଏଠାରେ ଉଲ୍ଲେଖ କରାଯାଇ ଅଛି । ଏହି

ସବୁ କିଯ୍ୟା କାପରେ କଣ ଥିଲା, ସୋମରସ କଣ ଏହା ଅତ ଯଥାର୍ଥ ରୂପରେ କେହି କହିବା ସହଜ ନୁହେଁ ।

ଏହି ବିଶାଳ ସ୍ୱର୍ଗ ଲୋକକୁ ଭୋଗକରି ସେମାନଙ୍କର ପୁଣ୍ୟ କ୍ଷୀଣ ହୋଇଗଲା ପରେ ପୁଣି ସେମାନେ ମୃତ୍ୟୁଲୋକରେ ପ୍ରବେଶ କରନ୍ତି । ଏହିପରି ତିନି ବେଦରେ ଉଲ୍ଲିଖିତ କର୍ମ କରିବା ଲୋକେ ଏବଂ କର୍ମ ଫଳରେ ଆକାଂକ୍ଷା ରଖିଥିବା ଲୋକେ ଜନ୍ମ ମରଣ ଚକ୍ରରେ ପଡ଼ିଥାନ୍ତି । ୨୧ ।

ଯେ ଏକନିଷ୍ଠ ହୋଇ ମୋର ଧ୍ୟାନକରି ମୋତେ ଭଜନ କରନ୍ତି, ଏହିପରି ମୋ'ଠାରେ ଯେ ନିତ୍ୟରତ ସେମାନଙ୍କର ଯୋଗ କ୍ଷେମ ଭାର ମୋ ଉପରେ । ୨୨ ।

ଟିପ୍ପଣୀ—ଏହିପରି ଯୋଗୀଙ୍କୁ ଚିହ୍ନିବାପାଇଁ ତିନୋଟି ଉତ୍ତମ ଲକ୍ଷଣ ଅଛି, ଯଥା—ସମଭାବ, କର୍ମ କରିବାର କୁଶଳତା ଓ ଏକନିଷ୍ଠ ଭକ୍ତି । ଏହି ତିନୋଟିଯାକ ପରସ୍ପର ଓଳଟ ପାଲଟ ହୋଇ ମିଳି ରହିବା ଉଚିତ । ଭକ୍ତି ବିନା ସମଭାବ ଲବ୍ଧ ହୋଇ ନ ପାରେ, କିମ୍ବା ସମଭାବ ବିନା ଭକ୍ତି ପାଇବା ମଧ୍ୟ କଠିନ । କର୍ମ କୁଶଳତାର ଅଭାବରେ ଭକ୍ତି ତଥା ସମଭାବର ଆଭାସ ମାତ୍ର ଦେଖା ଯିବାର ଆଶଙ୍କା ଥାଏ । ଯୋଗ କହିଲେ—ଅପ୍ରାପ୍ତ ବସ୍ତୁକୁ ପ୍ରାପ୍ତ ହେବା, କ୍ଷେମ କହିଲେ ପ୍ରାପ୍ତ ବସ୍ତୁକୁ ରକ୍ଷା କରିବା ।

ପୁଣି ଯେଉଁମାନେ ଶ୍ରଦ୍ଧା ଭାବରେ ଅନ୍ୟ ଦେବତାମାନଙ୍କୁ ଭଜନ୍ତି ତାହା ବିଧିପୂର୍ବକ ନ ହେଲେ ମଧ୍ୟ ସେମାନେ ମୋତେ ହିଁ ଭଜନ କରନ୍ତି । ୨୩ ।

ଟିପ୍ପଣୀ—'ବିଧି ବିନା' ର ଅର୍ଥ—ଅଜ୍ଞାନବଶତଃ ମୋତେ ଏକ ନିରଞ୍ଜନ ନିରାକାର ବୋଲି ନ ଜାଣିବା ।

ମୁଁ ସମସ୍ତ ଯଜ୍ଞ ଭୋଗ କରିବା ସ୍ୱାମୀ ଅଟେ । ମୋର ଏପରି ପ୍ରକୃତ ସ୍ୱରୂପକୁ ସେମାନେ ଜାଣି ପାରନ୍ତି ନାହିଁ । ତେଣୁ ସେମାନେ ଅଧୋଗତି ଲାଭ କରନ୍ତି । ୨୪ ।

ଦେବତାମାନଙ୍କୁ ପୂଜିବା ଲୋକେ ଦେବ ଲୋକକୁ, ପିତା ପ୍ରପିତାଙ୍କୁ ପୂଜିବା ଲୋକେ ପିତୃ ଲୋକକୁ ଏବଂ ଭୂତ ପ୍ରେତକୁ ପୂଜିବା ଲୋକେ ଭୂତ ପ୍ରେତ ଲୋକକୁ ଯାନ୍ତି । ଯେଉଁମାନେ ମୋତେ ପୂଜା କରନ୍ତି, ସେମାନେ ମୋତେହିଁ ପାଇଥାନ୍ତି । ୨୫ ।

ଟିପ୍ପଣୀ—ଭାବାର୍ଥ ଏହି ଯେ ଈଶ୍ୱରଙ୍କ ପ୍ରୀତିପାଇଁ ସେବା ଭାବରେ ଯାହା ଦିଆଯାଏ ତାହା ଯେଉଁ ସବୁ ପ୍ରାଣୀଙ୍କୁ ଦିଆଯାଏ, ସେହି ପ୍ରାଣୀ ଭିତରେ ଅନ୍ତର୍ଯାମୀରୂପେ ସ୍ୱୟଂ ଭଗବାନ ତାହାହିଁ ଗ୍ରହଣ କରନ୍ତି ।

ପତ୍ର, ଫୁଲ, ଫଳ, ପାଣି ଆଦି ଯାହା କିଛି ଯେ ମୋତେ ଭକ୍ତି ଭାବରେ ଅର୍ପଣ କରେ, ସେହି ଯତ୍ନଶୀଳ ପୁରୁଷର ଏ ରୂପ ଭକ୍ତିପୂର୍ଣ୍ଣ ଅର୍ପଣକୁ ମୁଁ ଗ୍ରହଣ କରେ । ୨୬ ।

ଅତଏବ ହେ କୌନ୍ତେୟ, ତୁମ୍ଭେ ଯାହା କର, ଯାହା ଖାଅ, ଯାହା ହୋମରେ ଆହୁତି ଦିଅ, ଯାହା ଦାନ କର, ତପ କର ସେ ସମସ୍ତ ମୋତେ ଅର୍ପଣ କର । ୨୭ ।

ତାହାହେଲେ ତୁମ୍ଭେ ଶୁଭାଶୁଭ ଫଳପ୍ରଦ କର୍ମ ବନ୍ଧନରୁ ମୁକ୍ତ ହୋଇବ ଏବଂ ଫଳତ୍ୟାଗୀରୂପକ ସମତ୍ୱକୁ ଲାଭ କରି ଜନ୍ମ ମରଣରୁ ଛାଡ଼ି ପାଇ ମୋଠାରେ ଆସି ମିଳିଯିବ । ୨୮ ।

ସମସ୍ତ ପ୍ରାଣୀଙ୍କ ପ୍ରତି ମୁଁ ସମଭାବ ରଖିଥାଏ । ମୋର କେହି ପ୍ରିୟ ନୁହନ୍ତି କିମ୍ବା ଅପ୍ରିୟ ମଧ୍ୟ ନୁହନ୍ତି । ଯେ ପୁରୁଷ ମୋତେ ଭକ୍ତି-

ପୂର୍ବକ ଭଜନ କରନ୍ତି ମୁଁ ତାହାଙ୍କଠାରେ ଥାଏଁ । ସେ ମଧ୍ୟ ମୋଠାରେ ଥାନ୍ତି । ୨୯ ।

ମନୁଷ୍ୟ ଯେତେ ବଡ଼ ଦୁରାଚାର ଅର୍ଥାତ୍ ପାପୀ ହେଲେ ମଧ୍ୟ ସେ ଯଦି ଏକଲକ୍ଷ୍ୟ ଓ ଏକଚିତ୍ତରେ ମୋତେ ଭଜେ, ତେବେ ତାହାଙ୍କୁ ସାଧୁ ବୋଲି ଜାଣିବ । କାରଣ ତାହାଙ୍କର ସଙ୍କଳ୍ପ ଅତି ଉତ୍ତମ ଅଟେ । ୩୦ ।

ଟିପ୍ପଣୀ—କାରଣ ଏକଲକ୍ଷ୍ୟ ଓ ଏକଚିତ୍ତ ଅର୍ଥାତ୍ ଅନନ୍ୟ-ଭକ୍ତିଭାବ ଦୁରାଚାରକୁ ଶାନ୍ତ କରିଦିଏ ।

ସେହି ପୁରୁଷ ଶୀଘ୍ର ଜଣେ ଧର୍ମାତ୍ମା ହୋଇଯାନ୍ତି ଏବଂ ସବୁବେଳେ ଶାନ୍ତି ଉପଭୋଗ କରନ୍ତି । ହେ କୌନ୍ତେୟ, ତୁମ୍ଭେ ଏହା ନିଶ୍ଚୟ ଜାଣ ଯେ ମୋର ଭକ୍ତର କଦାପି ନାଶ ନାହିଁ । ୩୧ ।

ଆହୁରି ମଧ୍ୟ ହେ ପାର୍ଥ, ଯେ କେହି ମୋର ଆଶ୍ରୟ ଗ୍ରହଣ କରନ୍ତି, ଏପରି କି ସ୍ତ୍ରୀ, ବୈଶ୍ୟ, ଶୂଦ୍ର ଏବଂ ନୀଚ କୁଳରେ ଜନ୍ମଗ୍ରହଣ କରିଥିବା ଲୋକେ ମଧ୍ୟ ପରମ ଗତି ଲାଭ କରନ୍ତି । ୩୨ ।

ଅତଏବ ପୁଣ୍ୟବାନ ବ୍ରାହ୍ମଣ, ରାଜର୍ଷି ପ୍ରଭୃତି ଯେଉଁମାନେ ମୋର ଭକ୍ତ ସେମାନଙ୍କ କଥା ଆଉ କଣ କହିବା ? ତେଣୁ ଏହି ଅନିତ୍ୟ ଓ ଦୁଃଖପୂର୍ଣ୍ଣ ଲୋକରେ ଜନ୍ମ ହୋଇଥିବାରୁ ତୁମ୍ଭେ ମୋର ଆଶ୍ରୟ ଗ୍ରହଣ କର । ୩୩ ।

ମୋଠାରେ ଚିତ୍ତ ଲଗାଅ, ମୋର ଭକ୍ତ ହୁଅ, ମୋ ନିମିତ୍ତ ଯଜ୍ଞ କର ଏବଂ ମୋତେ ନମସ୍କାର କର । ଏହିପରି ପୂର୍ଣ୍ଣ ମାତ୍ରାରେ ପ୍ରାଣକୁ ଢାଳି ଦେଇ ମୋଠାରେ ତୁମ୍ଭର ଆତ୍ମାକୁ ମିଳାଇ ଦେଇ ପାରିଲେ ନିଶ୍ଚୟ ତୁମ୍ଭେ ମୋତେ ପାଇବ । ୩୪ ।

ଓଁ ତତ୍ ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମ ବିଦ୍ୟାନ୍ତର୍ଗତ ଯୋଗ ଶାସ୍ତ୍ରର ଶ୍ରୀ କୃଷ୍ଣାର୍ଜୁନ ସମ୍ବାଦର ରାଜବିଦ୍ୟା ରାଜଗୁହ୍ୟ ନାମକ ନବମ ଅଧ୍ୟାୟର ସମାପ୍ତି ।

---

( ୧୦ )

## ବିଭୂତି ଯୋଗ

ସପ୍ତମ ଅଷ୍ଟମ ଓ ନବମ ଅଧ୍ୟାୟମାନଙ୍କରେ ଭକ୍ତି ଆଦି ବିଷୟକୁ ନିରୂପଣ କରି ପରେ ଭଗବାନ ବର୍ତ୍ତମାନ ତାହାଙ୍କର ଅନନ୍ତ ବିଭୂତିରୁ ଯତ୍‌କିଞ୍ଚିତ୍ ଦର୍ଶନ ଭକ୍ତମାନଙ୍କପାଇଁ ଦେଖାଉଅଛନ୍ତି ।

ହେ ମହାବାହୋ, ତୁମ୍ଭେ ପୁଣି କେତେକ ଉତ୍ତମ କଥା ଶୁଣ । ତୁମ୍ଭେ ମୋର ପ୍ରିୟ ବନ୍ଧୁ ଅଟ । ତେଣୁ ସେ ସବୁ ମୁଁ ତୁମ୍ଭର ହିତପାଇଁ କହିବି । ୧ ।

ଦେବତାଗଣ ଓ ମହର୍ଷିମାନେ ମଧ୍ୟ ମୋର ଉତ୍ପତ୍ତି ଜାଣନ୍ତି ନାହିଁ । କାରଣ ମୁଁ ଏହି ଦେବତା ଓ ମହର୍ଷିମାନଙ୍କର ସମସ୍ତ ପ୍ରକାର ମୂଳ କାରଣ ଅଟେ । ୨ ।

ମୃତ୍ୟୁଲୋକବାସୀ ଯେଉଁ ଜ୍ଞାନୀ ମୋତେ ସର୍ବ ଲୋକର ମହେଶ୍ୱର ଅଜନ୍ମା ଓ ଅନାଦି ରୂପେ ଜାଣନ୍ତି ସେ ସମସ୍ତ ପାପରୁ ମୁକ୍ତ ହୋଇ ଯାନ୍ତି । ୩ ।

ବୁଦ୍ଧି, ଜ୍ଞାନ, ଅସଂମୋହ, କ୍ଷମା, ସତ୍ୟ, ଇନ୍ଦ୍ରିୟ ନିଗ୍ରହ, ଶାନ୍ତି, ସୁଖ, ଦୁଃଖ, ଜନ୍ମ, ମୃତ୍ୟୁ, ଭୟ,ଅଭୟ, ଅହିଂସା, ସମତା, ସନ୍ତୋଷ, ତପ, ଦାନ, ଯଶ, ଅପଯଶ ଏହିପରି ପ୍ରାଣୀମାନଙ୍କର ଭିନ୍ନ ଭିନ୍ନ ଗୁଣ ସବୁ ମୋ'ଠାରୁ ଉତ୍ପନ୍ନ ହୁଏ । ୪,୫ ।

ସପ୍ତର୍ଷି, ସେମାନଙ୍କ ପୂର୍ବରୁ ସନକାଦି ଚାରି, ଏବଂ (ଚଉଦ) ମନୁ ମୋର ସଂକଳ୍ପରୁ ଜାତ । ସେମାନଙ୍କ ଠାରୁ ଏହି ଲୋକ (ସଂସାର) ଉତ୍ପନ୍ନ ହୋଇଅଛି । ୬ ।

ମୋର ଏ ରୂପ ବିଭୂତି ଓ ଶକ୍ତିକୁ ଯେ ଯଥାର୍ଥ ରୂପରେ ଜାଣନ୍ତି ସେ ଅଟଳ ସାମ୍ୟାବସ୍ଥା ଲାଭ କରନ୍ତି, ଏଥିରେ ସଂଶୟ ନାହିଁ । ୭ ।

ମୁଁ ସମସ୍ତଙ୍କର ଉତ୍ପତ୍ତିସ୍ଥଳ, ମୋ'ଠାରୁ ସମସ୍ତେ ଉତ୍ପନ୍ନ ହୁଅନ୍ତି, ଏହା ଜାଣି ଜ୍ଞାନୀ ପୁରୁଷ ମୋତେ ପ୍ରୀତିପୂର୍ବକ ଭଜନ କରନ୍ତି । ୮ ।

ମୋ'ଠାରେ ଯେଉଁମାନେ ଚିତ୍ତ ଲଗାଇ ପ୍ରାଣକୁ ଅର୍ପଣ କରିଥାନ୍ତି ସେମାନେ ନିଜ ନିଜ ମଧ୍ୟରେ ମୋ' କଥା ବୁଝାବୁଝି ହୋଇ ମୋର ଗୁଣ ନିତ୍ୟ କୀର୍ତ୍ତନ କରି ପରମ ସନ୍ତୋଷ ଓ ଆନନ୍ଦରେ ରହନ୍ତି । ୯ ।

ଏହିପରି ମୋ' ଠାରେ ଯେଉଁମାନେ ତନ୍ମୟ ହୋଇ ମୋତେ ପ୍ରେମପୂର୍ବକ ଭଜନ କରନ୍ତି ସେମାନଙ୍କୁ ମୁଁ ଜ୍ଞାନ ପ୍ରଦାନ କରେ । ତେଣୁ ସେମାନେ ମୋତେ ପାଇଥାନ୍ତି । ୧୦ ।

ସେମାନଙ୍କ ଉପରେ ଦୟାକରି, ସେମାନଙ୍କ ହୃଦୟରେ ରହି ଜ୍ଞାନ ରୂପକ ଉଜ୍ଜ୍ୱଳମୟ ଦୀପଦ୍ୱାରା ସେମାନଙ୍କର ଅଜ୍ଞାନତା ରୂପକ ଅନ୍ଧକାରକୁ ମୁଁ ନାଶକରେ । ୧୧ ।

ଅର୍ଜ୍ଜୁନ କହିଲେ—ହେ ଭଗବାନ୍, ତୁମ୍ଭେ ପରମ ବ୍ରହ୍ମ, ପରମ ଧାମ, ଓ ପରମ ପବିତ୍ର ଅଟ । ସମସ୍ତ ଋଷି, ଦେବର୍ଷି ନାରଦ, ଅସିତ ଦେବଳ

ଏବଂ ବ୍ୟାସ ତୁମ୍ଭଙ୍କୁ ଅବିନାଶୀ, ଦିବ୍ୟ ପୁରୁଷ, ଆଦି ଦେବ, ଅଜନ୍ମା ଏବଂ ଈଶ୍ୱର ବୋଲି ମାନନ୍ତି । ତୁମ୍ଭେ ମଧ୍ୟ ନିଜେ ସେହି କଥା ମୋତେ କହୁଅଛ । ୧୨,୧୩ ।

ହେ କେଶବ, ତୁମ୍ଭେ ଯେତେ ଯାହା ସବୁ କହୁଅଛ ସେ ସବୁ ସତ୍ୟ ବୋଲି ମୁଁ ମାନୁଅଛି । କିନ୍ତୁ ତୁମ୍ଭର ମୂଳ ସ୍ୱରୂପ କଣ ତାହା ଦେବତାମାନେ ଜାଣନ୍ତି ନାହିଁ କିମ୍ବା ଦାନବ ମଧ୍ୟ ଜାଣନ୍ତି ନାହିଁ ।୧୪।

ହେ ପୁରୁଷୋତ୍ତମ, ହେ ପ୍ରାଣୀମାନଙ୍କର ପିତା, ହେ ଜୀବେଶ୍ୱର, ହେ ଦେବଦେବ, ହେ ଜଗତ୍ ପ୍ରଭୁ, ତୁମ୍ଭେ ନିଜେ କେବଳ ନିଜଦ୍ୱାରା ନିଜକୁ ଜାଣିପାର । ୧୫ ।

ଅତଏବ ତୁମ୍ଭର ଯେଉଁ ସବୁ ବିଭୂତି ଅଛି, ଯାହାଦ୍ୱାରା ତୁମ୍ଭେ ସର୍ବ ଲୋକରେ ବ୍ୟାପି ରହିଅଛ, ସେହିସବୁ ବିଭୂତି ପୂର୍ଣ୍ଣମାତ୍ରାରେ ମୋତେ କହିବା ତୁମ୍ଭର ଉଚିତ । ୧୬ ।

ହେ ଯୋଗିବର, ତୁମ୍ଭ ବିଷୟ ସବୁବେଳେ ଚିନ୍ତା କରୁ କରୁ ମୁଁ ତୁମ୍ଭଙ୍କୁ କିପରିଭାବରେ ଜାଣିବି ? ହେ ଭଗବାନ୍, କେଉଁ କେଉଁ ରୂପରେ ତୁମ୍ଭର ଚିନ୍ତା କରିବାକୁ ହେବ ? ୧୭ ।

ହେ ଜନାର୍ଦ୍ଦନ, ତୁମ୍ଭେ ତୁମ୍ଭର ଯୋଗ ଓ ବିଭୂତି ବିଷୟ ବିସ୍ତୃତ ଭାବରେ ଆଉ ଥରେ ମୋତେ କହ । ତୁମ୍ଭର କଥା ମୋତେ ଅମୃତପରି ଲାଗୁଅଛି । ଯେତେ ଶୁଣିଲେ ମଧ୍ୟ ମନ ତୃପ୍ତ ହେଉ ନାହିଁ । ୧୮ ।

ଶ୍ରୀଭଗବାନ୍ କହିଲେ—ହେ କୁରୁଶ୍ରେଷ୍ଠ, ମୋର ବିଭୂତିମାନଙ୍କ ମଧ୍ୟରୁ କେତେକ ମୁଖ୍ୟ କଥା ବାଛି ବାଛି ତୁମ୍ଭଙ୍କୁ କହିବି । ତାହା ଅସଂଖ୍ୟ; ସେଗୁଡ଼ିକର ଆଦି ଅନ୍ତ ନାହିଁ । ୧୯ ।

ହେ ଗୁଡ଼ାକେଶ, ସମସ୍ତ ପ୍ରାଣୀ ଭିତରେ ଥିବା ଆତ୍ମା ମୁଁ ଅଟେ; ଏବଂ ପ୍ରାଣୀମାନଙ୍କର ମୂଳ, ମଧ୍ୟ ଓ ଅନ୍ତ ମଧ୍ୟ ମୁଁ । ୨୦ ।

ମୁଁ ଅଦିତ୍ୟମାନଙ୍କ ମଧ୍ୟରେ ବିଷ୍ଣୁ, ତେଜସ୍ୱୀମାନଙ୍କ ମଧ୍ୟରେ କିରଣମୟ ସୂର୍ଯ୍ୟ, ବାୟୁ ମଧ୍ୟରେ ମରୀଚି ଏବଂ ନକ୍ଷତ୍ରମାନଙ୍କ ମଧ୍ୟରେ ଚନ୍ଦ୍ର ଅଟେ । ୨୧ ।

ମୁଁ ବେଦରେ ସାମବେଦ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ର, ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ ଏବଂ ପ୍ରାଣୀମାନଙ୍କର ଚେତନା ଅଟେ ।୨୨।

ମୁଁ ରୁଦ୍ରମାନଙ୍କ ମଧ୍ୟରେ ଶଙ୍କର, ଯକ୍ଷ ଓ ରାକ୍ଷସମାନଙ୍କ ମଧ୍ୟରେ କୁବେର, (ଆଠ) ବସୁ ମଧ୍ୟରେ ଅଗ୍ନି ଏବଂ ପର୍ବତମାନଙ୍କ ମଧ୍ୟରେ ମେରୁ ଅଟେ । ୨୩ ।

ହେ ପାର୍ଥ, ପୁରୋହିତମାନଙ୍କ ମଧ୍ୟରେ ମୋତେ ପ୍ରଧାନ ବୃହସ୍ପତି ବୋଲି ଜାଣ । ମୁଁ ସେନାନାୟକମାନଙ୍କ ମଧ୍ୟରେ କାର୍ତ୍ତିକେୟ ଏବଂ ଜଳାଶୟମାନଙ୍କ ମଧ୍ୟରେ ମୁଁ ପୁଣି ସାଗର ଅଟେ । ୨୪ ।

ମୁଁ ମହର୍ଷିମାନଙ୍କ ମଧ୍ୟରେ ଭୃଗୁ, ବାଣୀରେ ଏକାକ୍ଷର ଓଁକାର, ଯଜ୍ଞମାନଙ୍କ ମଧ୍ୟରେ ଜପଯଜ୍ଞ ଏବଂ ପର୍ବତମାନଙ୍କ ମଧ୍ୟରେ ହିମାଳୟ । ୨୫ ।

ମୁଁ ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷ, ଦେବର୍ଷିମାନଙ୍କ ମଧ୍ୟରେ ନାରଦ, ଗନ୍ଧର୍ବମାନଙ୍କ ମଧ୍ୟରେ ଚିତ୍ରରଥ ଏବଂ ସିଦ୍ଧ ମୁନିମାନଙ୍କ ମଧ୍ୟରେ କପିଳ ମୁନି । ୨୬ ।

ଅମୃତ ମନ୍ଥନ ସମୟରେ ଉଚ୍ଚୈଶ୍ରବା ନାମକ ଯେଉଁ ଅଶ୍ୱ ବାହାରି ଥିଲା ଅଶ୍ୱମାନଙ୍କ ମଧ୍ୟରେ ମୋତେ ସେହି ଉଚ୍ଚୈଶ୍ରବା ବୋଲି ଜାଣ । ହସ୍ତୀମାନଙ୍କ ମଧ୍ୟରେ ମୁଁ ଐରାବତ ହସ୍ତୀ ଏବଂ ମନୁଷ୍ୟମାନଙ୍କ ମଧ୍ୟରେ ମୁଁ ରାଜା ଅଟେ । ୨୭ ।

ଆୟୁଧମାନଙ୍କ ମଧ୍ୟରେ ମୁଁ ବଜ୍ର, ଗାଭୀମାନଙ୍କ ମଧ୍ୟରେ ମୁଁ କାମଧେନୁ । ମୁଁ ପ୍ରଜାମାନଙ୍କର ଉତ୍ପତ୍ତିର ମୂଳ କାରଣ କାମଦେବ ଏବଂ ସର୍ପମାନଙ୍କ ମଧ୍ୟରେ ମୁଁ ବାସୁକି ଅଟେ । ୨୮ ।

ମୁଁ ନାଗମାନଙ୍କ ମଧ୍ୟରେ ଅନନ୍ତ, ଜଳଚର ପ୍ରାଣୀମାନଙ୍କ ମଧ୍ୟରେ ବରୁଣ, ପିତୃମାନଙ୍କ ମଧ୍ୟରେ ଅର୍ଯ୍ୟମା ଏବଂ ଦଣ୍ଡଦାତାମାନଙ୍କ ମଧ୍ୟରେ ଯମ । ୨୯ ।

ମୁଁ ଦୈତ୍ୟମାନଙ୍କ ମଧ୍ୟରେ ପ୍ରହ୍ଲାଦ, ଗଣନାକାରମାନଙ୍କ ମଧ୍ୟରେ କାଳ, ପଶୁମାନଙ୍କ ମଧ୍ୟରେ ସିଂହ ଏବଂ ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ ଅଟେ । ୩୦ ।

ମୁଁ ପବିତ୍ର କରିବା ପଦାର୍ଥମାନଙ୍କ ମଧ୍ୟରେ ପବନ, ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ପରଶୁରାମ, ମାଛମାନଙ୍କ ମଧ୍ୟରେ ମଗର, ନଦୀମାନଙ୍କ ମଧ୍ୟରେ ମୁଁ ମଧ୍ୟ ଗଙ୍ଗାନଦୀ ଅଟେ । ୩୧ ।

ହେ ଅର୍ଜୁନ, ସୃଷ୍ଟିର ଆଦି, ମଧ୍ୟ ଓ ଅନ୍ତ ମୁଁ । ମୁଁ ବିଦ୍ୟା ମଧ୍ୟରେ ଅଧ୍ୟାତ୍ମ ବିଦ୍ୟା ଏବଂ ବିବାଦୀମାନଙ୍କର ବାଦ ଅଟେ । ୩୨ ।

ଅକ୍ଷରମାନଙ୍କ ମଧ୍ୟରେ ଅକାର, ସମାସମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଏବଂ ମୁଁ ଅବିନାଶୀ କାଳ ଅଟେ । ସର୍ବତ୍ର ବ୍ୟାପ୍ତ ହୋଇ ସମସ୍ତଙ୍କର ଧାରଣକର୍ତ୍ତା ମଧ୍ୟ ମୁଁ ଅଟେ । ୩୩ ।

ମୁଁ ସମସ୍ତଙ୍କୁ ହରଣ କରି ନେଇଯିବା ମୃତ୍ୟୁ ଏବଂ ଭବିଷ୍ୟତରେ ପୁଣି ଜଭବର ଉତ୍ପତ୍ତି କାରଣ ଅଟେ । ମୁଁ ସ୍ତ୍ରୀ ଜାତିର କୀର୍ତ୍ତି, ଲକ୍ଷ୍ମୀ, ବାଣୀ, ସ୍ମୃତି, ମେଧା, ଧୃତି ଓ କ୍ଷମା ଅଟେ । ୩୪ ।

ସାମ ( ଗାନ କରିବାର ବୈଦିକ ସ୍ତୋତ୍ର ) ମାନଙ୍କ ମଧ୍ୟରେ ମୁଁ ବୃହତ୍ ସାମ ଅଟେ । ଛନ୍ଦମାନଙ୍କ ମଧ୍ୟରେ ଗାୟତ୍ରୀ, ମାସମାନଙ୍କ

ମଧ୍ୟରେ ମାର୍ଗଶୀର ଏବଂ ଋତୁମାନଙ୍କ ମଧ୍ୟରେ ମୁଁ ବସନ୍ତଋତୁ ଅଟେ । ୩୫ ।

ଛଳକାରୀମାନଙ୍କ ମଧ୍ୟରେ ମୁଁ ଦ୍ୟୂତ, ପ୍ରଭାବଶାଳୀ ପୁରୁଷର ପ୍ରଭାବ, ମୁଁ ଜୟ, ନିଶ୍ଚୟ ଓ ସାତ୍ତ୍ୱିକ ଗୁଣଧାରୀ ପୁରୁଷଙ୍କର ସତ୍ତ୍ୱ ଅଟେ । ୩୬ ।

ଟିପ୍ପଣୀ :—ଛଳକାରୀମାନଙ୍କ ମଧ୍ୟରେ ମୁଁ ଦ୍ୟୂତ ଅଟେ । ଏହି ବାକ୍ୟ ଶୁଣି ଚମକି ପଡ଼ିବାର କୌଣସି କାରଣ ନାହିଁ । ଏଠାରେ ସାର ଅସାରର ନିର୍ଣ୍ଣୟ ନାହିଁ, କିନ୍ତୁ ଯାହା କିଛି ଘଟୁଅଛି ସେ ସବୁ ଈଶ୍ୱରଙ୍କର ଅଜ୍ଞବିନା ହୁଏ ନାହିଁ । କେବଳ ଏହି ଭାବକୁ ଦେଖାଇ ଦିଆଯାଇଅଛି । ସମସ୍ତ ତାହାଙ୍କର ଅଧୀନ, ଏହା ଜାଣି କପଟୀ ଲୋକ ନିଜର ଅଭିମାନ ଛାଡ଼ି ଛଳନା ତ୍ୟାଗକରିବା ଉଚିତ । ମୁଁ ବୃଷ୍ଣି କୁଳରେ ଅର୍ଥାତ୍ ଯାଦବ ମାନଙ୍କ ମଧ୍ୟରେ ବାସୁଦେବ, ପାଣ୍ଡବମାନଙ୍କ ମଧ୍ୟରେ ଧନଞ୍ଜୟ, ମୁନିମାନଙ୍କ ମଧ୍ୟରେ ବ୍ୟାସ ଏବଂ କବିମାନଙ୍କ ମଧ୍ୟରେ ମୁଁ ଉଶନା କବି ଅଟେ । ୩୭ ।

ମୁଁ ଶାସନକର୍ତ୍ତାଙ୍କର ଦଣ୍ଡ, ଜୟ ଇଚ୍ଛା କରିବା ପୁରୁଷଙ୍କର ନୀତି, ଗୋପନୀୟ କଥାର ମୌନଭାବ ଏବଂ ଜ୍ଞାନୀମାନଙ୍କର ଜ୍ଞାନ ଅଟେ । ୩୮ ।

ହେ ଅର୍ଜ୍ଜୁନ, ପ୍ରାଣୀମାନଙ୍କର ଉତ୍ପତ୍ତିର ମୂଳ କାରଣ ମୁଁ । ସ୍ଥାବର ଜଙ୍ଗମ ଏପରି କିଛି ନାହିଁ ଯାହା କି ମୋ' ବିନା ରହିଅଛି ।୩୯।

ହେ ପରନ୍ତପ, ମୋର ଦିବ୍ୟ ବିଭୂତିମାନଙ୍କର ଅନ୍ତ ନାହିଁ । ବିଭୂତିମାନଙ୍କର ବିସ୍ତାର ମୁଁ କେବଳ ଦୃଷ୍ଟାନ୍ତସ୍ୱରୂପ ତୁମ୍ଭଙ୍କୁ କହିଲି । ୪୦ ।

ଯାହା ଭିଛି ବିଭୂତିମାନ୍, ଲକ୍ଷ୍ମୀମାନ୍ ଅଥବା ପ୍ରଭାବଶାଳୀ ତାହା ମୋର ତେଜର ଅଂଶରୁ ଜାତ ବୋଲି ଜାଣ । ୪୧ ।

ଅଥବା ହେ ଅର୍ଜୁନ, ଏହାକୁ ବିସ୍ତୃତ ଭାବରେ ଜାଣି ତୁମେ କଣ କରିବ ? ମୁଁ ମୋର ଗୋଟିଏ ଅଂଶରେ ସମଗ୍ର ଜଗତକୁ ଧାରଣ କରି ବିଦ୍ୟମାନ ଅଛି । ୪୨ ।

ଓଁ ତତ୍‌ସତ୍ ।

ଏହିପରି ଶ୍ରୀମଦ୍‌ଭଗବଦ୍ଗୀତା ରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀକୃଷ୍ଣାର୍ଜୁନ ସଂବାଦର ବିଭୂତି ଯୋଗ ନାମକ ଦଶମ ଅଧ୍ୟାୟର ସମାପ୍ତି ।

---

( ୧୧ )

## ବିଶ୍ୱରୂପ ଦର୍ଶନ ଯୋଗ

ଏହି ଅଧ୍ୟାୟରେ ଭଗବାନ ନିଜର ବିରାଟ ସ୍ୱରୂପକୁ ଅର୍ଜୁନଙ୍କୁ ଦେଖାଇ ଅଛନ୍ତି । ଭକ୍ତମାନଙ୍କର ଏହି ଅଧ୍ୟାୟଟି ଅତି ପ୍ରିୟ । ଏଥିରେ ଯୁକ୍ତି ନାହିଁ, କିନ୍ତୁ କେବଳ କାବ୍ୟଭାବ ଅଛି । ଏହି ଅଧ୍ୟାୟକୁ ପାଠ କଲାବେଳେ ମନୁଷ୍ୟ ଛିର ହୁଏ ନାହିଁ ।

ଅର୍ଜୁନ କହିଲେ—ତୁମ୍ଭେ ମୋ' ପ୍ରତି କୃପା କରି ଏହି ସବୁ ଆଧ୍ୟାତ୍ମିକ ପରମ ରହସ୍ୟ କହିଲ । ତୁମ୍ଭେ ମୋତେ ଯାହା କହିଲ ତଦ୍ୱାରା ମୋହ ଦୂର ହୋଇଗଲା । ୧ ।

ପ୍ରାଣୀମାନଙ୍କର ଉତ୍ପତ୍ତି ଓ ନାଶ କଥା ମୁଁ ତୁମ୍ଭଠାରୁ ବିସ୍ତୃତ ଭାବରେ ଶୁଣିଲି । ହେ କମଳପତ୍ରାକ୍ଷ, ସେହିପରି ତୁମ୍ଭର ଅବିନାଶୀ ମାହାତ୍ମ୍ୟ ମଧ୍ୟ ଶୁଣିଲି । ୨ ।

ହେ ପରମେଶ୍ୱର, ତୁମ୍ଭେ ଯେପରି ନିଜର ବୃତ୍ତାନ୍ତ ବଖାଣୁଅଛ ତୁମ୍ଭେ ପ୍ରକୃତରେ ସେପରି ଅଟ । ହେ ପୁରୁଷୋତ୍ତମ, ତୁମ୍ଭର ସେହି ଈଶ୍ୱରୀକ ରୂପ ଦେଖିବାପାଇଁ ମୋର ଭାରି ଇଚ୍ଛା ହେଉଅଛି । ୩ ।

ହେ ପ୍ରଭୋ, ତୁମ୍ଭେ ଯଦି ମନେକର ଯେ ମୁଁ ତୁମ୍ଭର ସେହି ସ୍ୱରୂପ ଦେଖିବାକୁ ଯୋଗ୍ୟ ତାହାହେଲେ ହେ ଯୋଗେଶ୍ୱର, ସେହି ଅବ୍ୟୟ ସ୍ୱରୂପ ମୋତେ ଥରେ ଦେଖାଅ । ୪ ।

ଶ୍ରୀ ଭଗବାନ କହିଲେ—ହେ ପାର୍ଥ, ନାନା ବର୍ଣ୍ଣ ଓ ନାନା ଆକୃତି ବିଶିଷ୍ଟ ମୋର ନାନାବିଧ ଶତ ଶତ ଓ ସହସ୍ର ସହସ୍ର ଦିବ୍ୟରୂପ ଦର୍ଶନ କର । ହେ ଭାରତ, ଆଦିତ୍ୟ, ବସୁ, ରୁଦ୍ର, ଦୁଇ ଅଶ୍ୱିନୀକୁମାର ଓ ମରୁତ ଆଦି ସମସ୍ତଙ୍କୁ ଦେଖ । ପୁଣି ଯାହା ତୁମ୍ଭେ କେବେହେଁ ଦେଖି ନ ଥିବ ସେପରି ବହୁତ ଆଶ୍ଚର୍ଯ୍ୟ କଥା ଦେଖ । ୬ ।

ହେ ଗୁଡ଼ାକେଶ, ମୋ ଦେହରେ ଏକତ୍ର ଅବସ୍ଥିତ ସମୁଦାୟ ସ୍ଥାବର ଜଙ୍ଗମ ଜଗତ୍ ଏବଂ ତାହାଛଡ଼ା ଆଉ ଯଦି କିଛି ଦେଖିବାକୁ ଇଚ୍ଛା ଥାଏ ତାହା ମଧ୍ୟ ଆଜି ଦେଖିଥାଅ । ୭ ।

ତୁମ୍ଭର ଏହି ଚର୍ମ-ଚକ୍ଷୁଦ୍ୱାରା ତୁମେ ମୋତେ ଦେଖି ପାରିବ ନାହିଁ । ତେଣୁ ମୁଁ ତୁମ୍ଭଙ୍କୁ ଦିବ୍ୟ ଚକ୍ଷୁ ଦେଉଅଛି । ତୁମ୍ଭେ ମୋର ଏହି ଐଶ୍ୱରିକ ଯୋଗକୁ ଦେଖ ।

ସଞ୍ଜୟ କହିଲେ—ହେ ରାଜନ୍, ଯୋଗେଶ୍ୱର କୃଷ୍ଣ ପାର୍ଥଙ୍କୁ ଏପରି କହି ନିଜର ପରମ ଐଶ୍ୱରିକ ରୂପକୁ ଦେଖାଇଲେ । ୯ ।

ସେହିରୂପରେ ଅସଂଖ୍ୟ ମୁଖ, ଅସଂଖ୍ୟ ଚକ୍ଷୁ । ତହିଁରେ ଅନେକ ଅଦ୍ଭୁତ ଦୃଶ୍ୟମାନ ଦେଖାଯାଉ ଥିଲା । ତାହା ଅନେକ ପ୍ରକାରର ଦିବ୍ୟ ଅଳଙ୍କାରରେ ବିଭୂଷିତ ଓ ନାନା ପ୍ରକାର ଦିବ୍ୟ ଆୟୁଧରେ ସୁସଜ୍ଜିତ ଥିଲା । ୧୦ ।

ସେ ଅନେକ ପ୍ରକାରର ଦିବ୍ୟମାଳା ଓ ବସ୍ତ୍ର ଧାରଣ କରିଥିଲେ । ସେ ଦିବ୍ୟ ସୁଗନ୍ଧ ଦ୍ରବ୍ୟ ବୋଳି ହୋଇଥିଲେ । ଏହିପରି ସର୍ବାଙ୍ଗରେ ଆଶ୍ଚର୍ଯ୍ୟମୟ, ଅନନ୍ତ ଓ ସର୍ବବ୍ୟାପୀ ଦେବରୂପ ଥିଲେ । ୧୧ ।

ଅକାଶରେ ସହସ୍ର ସୂର୍ଯ୍ୟଙ୍କର ତେଜ ଏକକ ପ୍ରକାଶ ପାଇଲେ ତାହା ସେ ମହାପୁରୁଷଙ୍କ ତେଜର ସମକକ୍ଷ ହେବ ନାହିଁ । ୧୨ ।

ସେଠାରେ ଏହି ଦେବାଧିଦେବଙ୍କର ଶରୀରରେ ନାନାରୂପରେ ବିଭକ୍ତ ସମଗ୍ର ଜଗତ ଏକରୂପରେ ଥିବାର ଅର୍ଜୁନଙ୍କୁ ଦେଖାଗଲା । ୧୩ ।

ଏହା ଦେଖି ଧନଞ୍ଜୟ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ତାଙ୍କର ରୋମ ଠିଆହୋଇ ଉଠିଲା । ସେ ନତମସ୍ତକରେ କର ଯୋଡ଼ି ଏହିପରି କହିବାକୁ ଲାଗିଲେ । ୧୪ ।

ଅର୍ଜୁନ କହିଲେ—ହେ ଦେବ, ତୁମର ଶରୀରରେ ଦେବତାମାନଙ୍କୁ, ଭିନ୍ନ ଭିନ୍ନ ପ୍ରାଣୀ ସମୂହକୁ, କମଳାସନସ୍ଥ ବ୍ରହ୍ମାଙ୍କୁ, ସମସ୍ତ ଋଷିଙ୍କୁ ଏବଂ ଉତ୍ତମ ଦିବ୍ୟ ସର୍ପଙ୍କୁ ମୁଁ ଦେଖୁଅଛି । ୧୫ ।

ଅନେକ ହାତ, ଅନେକ ପେଟ, ଅନେକ ମୁହଁ ଏବଂ ଅନେକ ଚକ୍ଷୁ ଥାଇ ଅନନ୍ତରୂପଧାରୀରୂପେ ସର୍ବତ୍ର ମୁଁ ତୁମ୍ଭଙ୍କୁ ଦେଖୁଅଛି । ତୁମର ଅନ୍ତ ନାହିଁ ମଧ୍ୟ ନାହିଁ କିମ୍ବା ଆଦି ନାହିଁ । ହେ ବିଶ୍ୱେଶ୍ୱର, ମୁଁ ତୁମର ବିଶ୍ୱରୂପକୁ ଦର୍ଶନ କରୁଅଛି । ୧୬ ।

ତୁମ୍ଭେ ମୁକୁଟଧାରୀ, ଗଦାଧାରୀ ଓ ଚକ୍ରଧାରୀ; ତୁମର ତେଜରାଶି ସର୍ବତ୍ର ପ୍ରକାଶମାନ, ତୁମ୍ଭଙ୍କୁ ଦେଖିବା କଷ୍ଟସାଧ୍ୟ ହେଲେ ମଧ୍ୟ ତୁମ୍ଭେ ଅସୀମ ଏବଂ ପ୍ରଜ୍ୱଳିତ ଅଗ୍ନି ଅଥବା ସୂର୍ଯ୍ୟଙ୍କ ପରି ଚତୁର୍ଦ୍ଦିଗରେ ଦେଦୀପ୍ୟମାନ, ଏପରି ତୁମ୍ଭଙ୍କୁ ମୁଁ ଦେଖୁଅଛି । ୧୭ ।

ତୁମ୍ଭେହିଁ ଅନ୍ତିମ ଜ୍ଞାତବ୍ୟ ବସ୍ତୁ, ତୁମ୍ଭେ ପରମ ଅକ୍ଷର, ତୁମ୍ଭେ ଏ ଜଗତର ପରମ ଆଶ୍ରୟ, ତୁମ୍ଭେ ନିତ୍ୟଧର୍ମର ଅବିନାଶୀ ରକ୍ଷକ, ତୁମ୍ଭେ ସନାତନ ପୁରୁଷ, ଏଥିରେ କିଛିମାତ୍ର ସଂଶୟ ନାହିଁ । ୧୮ ।

ଯାହାଙ୍କର ଆଦି ମଧ୍ୟ କିମ୍ବା ଅନ୍ତ ନାହିଁ; ଯାହାଙ୍କର ଅନନ୍ତଶକ୍ତି, ଅନନ୍ତ ବାହୁ, ସୂର୍ଯ୍ୟଚନ୍ଦ୍ର ଯାହାଙ୍କର ଚକ୍ଷୁ ସ୍ୱରୂପ, ଯାହାଙ୍କର ମୁଖ ପ୍ରଜ୍ୱଳିତ ଅଗ୍ନି ସମାନ ଏବଂ ଯେ ନିଜର ତେଜଦ୍ୱାରା ଏ ଜଗତକୁ ତପ୍ତ କରୁଅଛନ୍ତି, ଏରୂପଭାବରେ ମୁଁ ତୁମ୍ଭଙ୍କୁ ଦେଖୁଅଛି । ୧୯ ।

ଆକାଶ ଓ ପୃଥିବୀର ମଧ୍ୟବର୍ତ୍ତୀସ୍ଥାନ ଏବଂ ଚତୁର୍ଦ୍ଦିଗ ତୁମ୍ଭେ କେବଳ ଏକାକୀ ବ୍ୟାପ୍ତହୋଇ ରହିଅଛ । ହେ ମହାତ୍ମନ୍, ତୁମ୍ଭର ଏପରି ଅଦ୍ଭୁତ ଓ ଉଗ୍ରରୂପକୁ ଦେଖି ତ୍ରିଲୋକ କମ୍ପମାନ ହେଉଅଛି । ୨୦ ।

ପୁଣି ଦେବତାମାନେ ଦଳ ଦଳ ହୋଇ ତୁମ୍ଭ ଭିତରେ ପ୍ରବେଶ କରୁଅଛନ୍ତି; ଭୀତ ହୋଇ କେହି କେହି କରପଦ୍ମ ଯୋଡ଼ି ତୁମ୍ଭଙ୍କୁ ପ୍ରାର୍ଥନା କରୁଅଛନ୍ତି । ମହର୍ଷି ଓ ସିଦ୍ଧ ପୁରୁଷଗଣ "ଜଗତର କଲ୍ୟାଣ ହେଉ" କହି ନାନାପ୍ରକାର ତୁମ୍ଭର ଯଶଗାନ କରୁଅଛନ୍ତି । ୨୧ ।

ରୁଦ୍ର, ଆଦିତ୍ୟ, ବସୁ, ସାଧ୍ୟଗଣ ବିଶ୍ୱଦେବ, ଅଶ୍ୱିନୀକୁମାରି, ମରୁତ ଉଷ୍ମପାୟୀ ପିତୃଗଣ, ଗନ୍ଧର୍ବ, ଯକ୍ଷ, ଅସୁର ଏବଂ ସିଦ୍ଧପୁରୁଷଗଣ ସମସ୍ତେ ବିସ୍ମୟାନ୍ୱିତ ହୋଇ ତୁମ୍ଭର ଆଡକୁ ଅନାଇ ରହିଛନ୍ତି । ୨୨ ।

ହେ ମହାବାହୋ, ଅନେକ ମୁଖ ଓ ନେତ୍ରଯୁକ୍ତ, ଅନେକ ହାତ ଜଙ୍ଘ ଓ ପାଦଯୁକ୍ତ, ଅନେକ ଉଦରଯୁକ୍ତ ଏବଂ ଅନେକ ତୀକ୍ଷ୍ଣଦନ୍ତ ଯୁକ୍ତ, ଏରୂପ ବିକଟାଳ ଦେଖାଯାଉଥିବା ତୁମ୍ଭର ବିଶାଳ ରୂପକୁ ଦେଖି ଲୋକେ ବଡ଼ ବ୍ୟାକୁଳ ହେଲେଣି ଏବଂ ମୁଁ ମଧ୍ୟ ସେହିପରିବ୍ୟାକୁଳ ହେଉଅଛି । ୨୩ ।

ତୁମ୍ଭଙ୍କୁ ଗଗନସ୍ପର୍ଶୀ, ଉଜ୍ଜ୍ୱଳମୟ, ନାନାପ୍ରକାର ରଙ୍ଗବିଶିଷ୍ଟ ମୁଖ ବ୍ୟାଦାନ କରୁଥିବାର ଦେଖି ଏବଂ ତେଜସ୍ୱର ବିଶାଳ-ନୟନ-ବିଶିଷ୍ଟ ଦେଖି ହେ ବିଷ୍ଣୋ, ମୋର ଅନ୍ତରାତ୍ମା ବ୍ୟାକୁଳ ହେଉଅଛି ଏବଂ ମୁଁ ଧୈର୍ଯ୍ୟ ଓ ଶାନ୍ତ ରଖି ପାରୁନାହିଁ । ୨୪ ।

ପ୍ରଳୟକାଳର ଅଗ୍ନି ପରି ବିକଟ ଦାନ୍ତ ଦନ୍ତଯୁକ୍ତ ତୁମ୍ଭର ମୁଖକୁ ଦେଖି ମୁଁ ଦଶଦିଗ ବାରିପାରୁ ନାହିଁ, କିମ୍ବା ଶାନ୍ତି ରହୁନାହିଁ । ହେ ଦେବେଶ, ହେ ଜଗନ୍ନିବାସ ପ୍ରସନ୍ନ ହୁଅ । ୨୫ ।

ସମସ୍ତ ରାଜାଙ୍କ ସଙ୍ଗରେ ଧୃତରାଷ୍ଟ୍ରଙ୍କର ପୁତ୍ରମାନେ, ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, ସେହି ସୂତପୁତ୍ର କର୍ଣ୍ଣ ଏବଂ ଆମ୍ଭ ପକ୍ଷର ପ୍ରସିଦ୍ଧ ଯୋଦ୍ଧାମାନେ ସମସ୍ତେ ତୁମ୍ଭର ବିକଟ ଦାଷ୍ଟ୍ରଦନ୍ତଯୁକ୍ତ ମୁଖ ମଧ୍ୟରେ ଅତିବେଗରେ ପ୍ରବେଶ କରୁଅଛନ୍ତି । କାହାର କାହାର ମୁଣ୍ଡ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ତୁମ୍ଭର ଦାନ୍ତ ସନ୍ଧିରେ ଲାଗି ରହିଥିବାର ଦେଖା ଯାଉଅଛି । ୨୬,୨୭ ।

ନଦୀମାନଙ୍କର ପ୍ରଖର ସ୍ରୋତ ଯେପରି ସମୁଦ୍ର ଆଡକୁ ଦୌଡୁଅଛି, ସେହିପରି ତୁମ୍ଭର ପ୍ରଜ୍ଜ୍ୱଳିତ ମୁଖ ଭିତରେ ଏହି ଜନନାୟକଗଣ ପ୍ରବେଶ କରୁଅଛନ୍ତି । ୨୮ ।

ପତଙ୍ଗସବୁ ମରିବାପାଇଁ ଯେପରି ଦୌଡ଼ିଯାଇ ଜଳନ୍ତା ନିଆଁରେ ପଡ଼ନ୍ତି ସେହିପରି ମରିବାପାଇଁ ଲୋକେ ଅତିବେଗରେ ତୁମ୍ଭ ମୁଖରେ ପ୍ରବେଶ କରୁଅଛନ୍ତି । ଚାରିଆଡୁ ସମସ୍ତ ଲୋକଙ୍କୁ ଗ୍ରାସକରି ତୁମ୍ଭେ ନିଜର ପ୍ରଜ୍ଜ୍ୱଳିତ ମୁଖକୁ ପୁଣି ଚାଟୁଅଛ । ହେ ସର୍ବବ୍ୟାପୀ ବିଷ୍ଣୁ, ତୁମ୍ଭର ଉଗ୍ର ପ୍ରକାଶ ସମସ୍ତ ଜଗତକୁ ତେଜଦ୍ୱାରା ପୂର୍ଣ୍ଣକରି ରହିଅଛି ଏବଂ ସନ୍ତାପିତ କରୁଅଛି । ୨୯,୩୦ ।

ଉଗ୍ରରୂପଧାରୀ ତୁମ୍ଭେ କିଏ ମୋତେ କୁହ । ହେ ଦେବବର, ତୁମ୍ଭେ ପ୍ରସନ୍ନ ହୁଅ । ତୁମ୍ଭେ ଯେଉଁ ଆଦି ପୁରୁଷ ଅଟ ମୁଁ ତାହା ଜାଣିବାକୁ ଇଚ୍ଛା କରେ । ମୁଁ ତୁମ୍ଭର ପ୍ରବୃତ୍ତି ଜାଣେନାହିଁ । ୩୧ ।

ଶ୍ରୀଭଗବାନ କହିଲେ— ଲୋକମାନଙ୍କ କ୍ଷୟ କରିବାକୁ ବଢିଥିବା କାଳ ମୁଁ । ଲୋକମାନଙ୍କୁ ସଂହାର କରିବାପାଇଁ ମୁଁ ଏଠାକୁ ଆସିଅଛି । ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ ଉଭୟ ସେନାରେ ଯେଉଁସବୁ ବଡ଼ବଡ଼ ଯୋଦ୍ଧାମାନେ ଅଛନ୍ତି ସେମାନଙ୍କ ମଧ୍ୟରୁ କେହି ରହିବେ ନାହିଁ । ୩୨ ।

ଅତଏବ ତୁମ୍ଭେ ଉଠ, ଯଶଲାଭ କର । ଶତ୍ରୁମାନଙ୍କୁ ଜୟକରି ଧନଧାନ୍ୟ-ପରିପୂରିତ ରାଜ୍ୟ ଭୋଗ କର । ଏମାନଙ୍କୁ ମୁଁ ପ୍ରଥମରୁ ସଂହାର କରିଅଛି । ହେ ସବ୍ୟସାଚୀ, ତୁମେ କେବଳ ନିମିତ୍ତ ମାତ୍ର ହୁଅ । ୩୩ ।

ଦ୍ରୋଣ, ଭୀଷ୍ମ, ଜୟଦ୍ରଥ, କର୍ଣ୍ଣ ଏବଂ ଅନ୍ୟାନ୍ୟ ସମସ୍ତ ଯୋଦ୍ଧାଙ୍କୁ ମୁଁ ସଂହାର କରିଅଛି । ତୁମ୍ଭେ ସେମାନଙ୍କୁ ମାର, ଡରନାହିଁ । ଯୁଦ୍ଧକର, ତୁମେ ନିଶ୍ଚୟ ଯୁଦ୍ଧରେ ଜୟୀ ହେବ । ୩୪ ।

ସଞ୍ଜୟ କହିଲେ— କେଶବଙ୍କ ଠାରୁ ଏତକ ଶୁଣି କର ଯୋଡ଼ି ଥରଥର ବାରମ୍ବାର ନମସ୍କାରପୂର୍ବକ ଅତିଭୟରେ ପ୍ରଣାମ କରି ମୁକୁଟଧାରୀ ଅର୍ଜୁନ ଅତି ଗଦ୍‌ଗଦ ସ୍ୱରରେ ଶ୍ରୀକୃଷ୍ଣଙ୍କୁ କହିବାକୁ ଲାଗିଲେ । ୩୫ ।

ଅର୍ଜୁନ କହିଲେ— ହେ ହୃଷିକେଶ, ଜଗତ ତୁମ୍ଭର ମହାତ୍ମ୍ୟ କୀର୍ତ୍ତନ କରି ଆନନ୍ଦିତ ହେଉଅଛି ଏବଂ ତୁମ୍ଭପ୍ରତି ଯେଉଁ ଅନୁରାଗ ଜାତ ହେଉଅଛି ତାହା ଯଥାର୍ଥ ଅଟେ । ରାକ୍ଷସମାନେ ଭୀତ ହୋଇ ଏଣେତେଣେ ପଳାଇ ଯାଉଅଛନ୍ତି ଏବଂ ସିଦ୍ଧ ପୁରୁଷମାନେ ତୁମ୍ଭଙ୍କୁ ନମସ୍କାର କରୁଅଛନ୍ତି । ୩୬ ।

ହେ ମହାତ୍ମନ୍, ସେମାନେ ତୁମ୍ଭଙ୍କୁ ନମସ୍କାର ନ କରିବେ କାହିଁକି ? ତୁମ୍ଭେ ଯେ ବ୍ରହ୍ମାଙ୍କଠାରୁ ଶ୍ରେଷ୍ଠ, ଆଦିକର୍ତ୍ତା ମଧ୍ୟ ଅଟ । ହେ ଅନନ୍ତ, ହେ ଦେବେଶ, ହେ ଜଗନ୍ନିବାସ, ତୁମ୍ଭେ ଅକ୍ଷର, ତୁମ୍ଭେ ସତ୍ ଓ ଅସତ୍ ଏବଂ ଯାହା ଏହାର ଉପରେ ତୁମ୍ଭେ ମଧ୍ୟ ତାହା ଅଟ । ୩୭ ।

ତୁମ୍ଭେ ଆଦିଦେବ, ତୁମ୍ଭେ ପୁରାତନ ପୁରୁଷ, ତୁମ୍ଭେ ଏହି ବିଶ୍ୱର ପରମ ଆଶ୍ରୟ-ସ୍ଥଳ ଅଟ । ତୁମ୍ଭେ ଜ୍ଞାତା, ତୁମ୍ଭେ ଜ୍ଞେୟ ଓ ତୁମ୍ଭେ ପରମ ଧାମ ଅଟ । ହେ ଅନନ୍ତରୂପ, ଏହି ଜଗତକୁ ତୁମ୍ଭେ ବ୍ୟାପି ରହିଅଛ । ୩୮ ।

ବାୟୁ, ଯମ, ଅଗ୍ନି, ବରୁଣ, ଚନ୍ଦ୍ର, ପ୍ରଜାପତି ପ୍ରପିତାମହ ତୁମ୍ଭେହିଁ ସବୁ । ତୁମ୍ଭଙ୍କୁ ସହସ୍ର ନମସ୍କାର, ପୁଣି ତୁମ୍ଭଙ୍କୁ ମଧ୍ୟ ସହସ୍ର ସହସ୍ର ନମସ୍କାର । ୩୯ ।

ହେ ସର୍ବ, ତୁମ୍ଭର ଆଗ ପଛ ଓ ଚତୁର୍ଦ୍ଦିଗରେ ନମସ୍କାର । ତୁମ୍ଭର ବୀର୍ଯ୍ୟ ଅନନ୍ତ । ତୁମ୍ଭର ଶକ୍ତି ଅପାର । ତୁମ୍ଭେ ହିଁ ସବୁ ଧାରଣ କରିଅଛ । ସୁତରାଂ ତୁମ୍ଭେ ହିଁ ସର୍ବସ୍ୱ । ୪୦ ।

ମୁଁ ତୁମ୍ଭର ମହିମା ନ ଜାଣି, ତୁମ୍ଭଙ୍କୁ ଜଣେ ମିତ୍ର ମନେକରି ହେ କୃଷ୍ଣ, ହେ ଯାଦବ, ହେ ସଖା, ଏହିପରି ଭୁଲ ବଶତଃ ହେଉ ନତୁବା ସ୍ନେହ ବଶତଃ ହେଉ—ଡ଼ାକି ମୁଁ ଯେଉଁ ଅବିବେକିତା ଦେଖାଇଅଛି ଏବଂ ଅନନ୍ଦରେ ଅହାର ବିହାର କଲାବେଳେ କିମ୍ବା ଶୋଇବାରେ, ବସିବାରେ ଅଥବା ଏକୁଟିଆ ବେଳେ କିମ୍ବା ବନ୍ଧୁମାନଙ୍କ ସମକ୍ଷରେ ତୁମ୍ଭର ଯାହା କିଛି ଅପମାନ ହୋଇଅଛି, ସେଥିଲାଗି କ୍ଷମାଦେବା ସକାଶେ ମୁଁ ତୁମ୍ଭଙ୍କୁ ବିନତି କରୁଅଛି । ୪୧,୪୨ ।

ତୁମ୍ଭେ ଚରାଚର ଜଗତର ପିତା ଓ ପୂଜ୍ୟ ଏବଂ ପରମ ଗୁରୁ ଅଛ । ତୁମ୍ଭପରି ଆଉ କେହି ନାହିଁ । ସୁତରାଂ ତୁମ୍ଭଠାରୁ ଅଧିକ ଆଉ କିଏ ହୋଇପାରେ ? ତ୍ରିଲୋକରେ ତୁମ୍ଭପରି ଶକ୍ତିମାନ୍ ଆଉ କିଏ ଅଛି ? ୪୩ ।

ଏହି ହେତୁ ସାଷ୍ଟାଙ୍ଗ ପ୍ରଣିପାତ କରି ତୁମ୍ଭଙ୍କୁ ପୂଜ୍ୟ ଈଶ୍ୱରଙ୍କୁ ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କରୁଅଛି । ହେ ଦେବ, ପିତା ପୁତ୍ରର ଏବଂ ସଖା ସଖାର ଯେପରି ସବୁ କଥା ସହିନିଏ ସେହିପରି ତୁମ୍ଭେ ମୋର ପ୍ରିୟ ବନ୍ଧୁ ଥିବା ସ୍ଥଳେ ମୋର କଲ୍ୟାଣ ପାଇଁ ସବୁକଥା ସହିନେବା ଉଚିତ । ୪୪ ।

ପୂର୍ବେ କେବେହେଁ ନ ଦେଖିଥିବା ଏପରି ତୁମ୍ଭର ରୂପକୁ ଦେଖି ମୋର ରୋମ ଟାଙ୍କୁରି ଉଠୁଛି । ଭୟରେ ମନ ବିହ୍ୱଳିତ ହୋଇ ଯାଉଅଛି । ଅତଏବ ହେ ଦେବ, ତୁମ୍ଭର ସେହି ପୂର୍ବରୂପକୁ ଦେଖାଅ । ହେ ଦେବେଶ, ହେ ଜଗନ୍ନିବାସ ପ୍ରସନ୍ନ ହୁଅ । ୪୫ ।

ପୂର୍ବପରି ମୁଁ ତୁମ୍ଭଙ୍କୁ ମୁକୁଟ, ଗଦା, ଚକ୍ର ଧାରଣ କରିଥିବା ରୂପରେ ଦେଖିବାକୁ ଇଚ୍ଛା କରେ । ହେ ସହସ୍ରବାହୋ, ହେ ବିଶ୍ୱମୂର୍ତ୍ତି, ତୁମ୍ଭେ ତୁମ୍ଭର ସେହି ଚତୁର୍ଭୁଜ ରୂପ ଧାରଣ କର । ୪୬ ।

ଶ୍ରୀଭଗବାନ କହିଲେ—ହେ ଅର୍ଜୁନ, ତୁମ୍ଭ ପ୍ରତି ପ୍ରସନ୍ନ ହୋଇ ନିଜ ଶକ୍ତିବଳରେ ମୁଁ ତୁମ୍ଭଙ୍କୁ ମୋର ତେଜୋମୟ ବିଶ୍ୱବ୍ୟାପୀ ଅନନ୍ତ ଓ ପରମ ଆଦ୍ୟ ରୂପକୁ ଦେଖାଇଅଛି । ତୁମ୍ଭ ଭିନ୍ନ ଅନ୍ୟ କେହି କେବେ ମୋର ଏହି ରୂପକୁ ଦେଖି ନାହାନ୍ତି । ୪୭ ।

ହେ କୁରୁପ୍ରବୀର, ବେଦାଭ୍ୟାସଦ୍ୱାରା, ଯଜ୍ଞଦ୍ୱାରା, ଅନ୍ୟାନ୍ୟ ଶାସ୍ତ୍ରାଧ୍ୟୟନଦ୍ୱାରା, ଦାନଦ୍ୱାରା, କର୍ମକର୍ମାଣିଦ୍ୱାରା କିମ୍ବା ଉଗ୍ରତପ ଦ୍ୱାରା ତୁମ୍ଭ ଭିନ୍ନ ଆଉ କେହି ମୋର ଏପରି ରୂପ ଦେଖିବାକୁ ସମର୍ଥ ନୁହନ୍ତି । ୪୮ ।

ମୋର ଏହି ବିକରାଳ ରୂପକୁ ଦେଖି ତୁମ୍ଭେ ଡରିଯାଅ ନାହିଁ, ଉଦ୍‌ବିଗ୍ନ ହୁଅ ନାହିଁ । ଭୟ ଛାଡ଼ି ଶାନ୍ତିରେ ପ୍ରସନ୍ନ କରି ମୋର ସେହି ପୂର୍ବ ପରିଚିତ ରୂପକୁ ଦେଖ । ୪୯ ।

ସଞ୍ଜୟ କହିଲେ—ବାସୁଦେବ ଅର୍ଜୁନଙ୍କୁ ଏପରି କହି ନିଜ ରୂପକୁ ପୁଣି ଦେଖାଇଲେ । ପୁନର୍ବାର ଶାନ୍ତମୂର୍ତ୍ତି ଧାରଣ କରି ସେହି ମହାତ୍ମା ଭୀତ ଅର୍ଜୁନଙ୍କୁ ଆଶ୍ୱାସନା ପ୍ରଦାନ କଲେ । ୫୦ ।

ଅର୍ଜୁନ କହିଲେ—ହେ ଜନାର୍ଦ୍ଦନ, ତୁମ୍ଭର ଏହି ପ୍ରଶାନ୍ତ ମନୁଷ୍ୟରୂପ ଦେଖି ମୁଁ ଶାନ୍ତଚିତ୍ତ ଓ ପ୍ରକୃତିସ୍ଥ ହୋଇଅଛି । ୫୧ ।

ଶ୍ରୀଭଗବାନ କହିଲେ—ତୁମ୍ଭେ ମୋର ଯେଉଁରୂପ ଦେଖିଲ, ତାହାର ଦର୍ଶନ ବଡ଼ ଦୁର୍ଲ୍ଲଭ ଅଟେ । ଦେବତା ମାନେ ମଧ୍ୟ ଏହି ରୂପକୁ ଦର୍ଶନ କରିବା ପାଇଁ ବଡ଼ ଲାଳାୟିତ । ୫୨ ।

ତୁମ୍ଭେ ମୋର ଯେପରି ଦର୍ଶନ ଲାଭ କରିଅଛ, ସେପରି ଦର୍ଶନ ବେଦଦ୍ୱାରା, ତପଦ୍ୱାରା, ଦାନ କିମ୍ବା ଯଜ୍ଞଦ୍ୱାରା ମଧ୍ୟ ହୋଇ ନ ପାରେ । ୫୩ ।

ପରନ୍ତୁ ହେ ଅର୍ଜୁନ, ହେ ପରନ୍ତପ, ମୋ ବିଷୟରେ ଏରୂପ ଜ୍ଞାନ, ମୋର ଏପରି ଦର୍ଶନ, ମୋଠାରେ ପ୍ରକୃତରେ ପ୍ରବେଶ ଲାଭ ଇତ୍ୟାଦି କେବଳ ଏକନିଷ୍ଠ ଭକ୍ତିଦ୍ୱାରା ସମ୍ଭବପର ଅଟେ । ୫୪ ।

ହେ ପାଣ୍ଡବ, ଯେ ପୁରୁଷ ସମସ୍ତ କର୍ମକୁ ମୋଠାରେ ସମର୍ପଣ କରନ୍ତି ମୋଠାରେ ତନ୍ମୟ ହୋଇ ମୋତେ ଭକ୍ତି କରନ୍ତି, ସବୁ ପ୍ରକାର ଆସକ୍ତି ତ୍ୟାଗ କରନ୍ତି, ଏବଂ ପ୍ରାଣୀମାନଙ୍କ ପ୍ରତି ଯାହାଙ୍କର ମନରେ କିଛି ମାତ୍ର ଦ୍ୱେଷଭାବ ନ ଥାଏ ସେହି ବ୍ୟକ୍ତି କେବଳ ମୋତେ ପାଇପାରନ୍ତି । ୫୫ ।

ଓଁ ତତ୍‌ସତ୍ ।

ଏହିପରି ଶ୍ରୀମଦ୍‌ଭଗବଦ୍ଗୀତା ରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦର ବିଶ୍ୱରୂପ ଦର୍ଶନ ଯୋଗ ନାମକ ଏକାଦଶ ଅଧ୍ୟାୟର ସମାପ୍ତି ।

——○——

(୧୨)

# ଭକ୍ତି ଯୋଗ

ପୁରୁଷୋତ୍ତମଙ୍କର ଦର୍ଶନ କେବଳ ଏକନିଷ୍ଠ ଭକ୍ତିରେ ହୋଇପାରେ । ଏହା ଭଗବାନ କହିଲା ପରେ ଭକ୍ତର ସ୍ୱରୂପସମ୍ମୁଖରେ ରହିବା ଉଚିତ । ଏହି ଦ୍ୱାଦଶ ଅଧ୍ୟାୟକୁ ସମସ୍ତେ ମୁଖସ୍ଥ କରିବା ଉଚିତ । ଏହା ସବୁଠାରୁ ଗୋଟିଏ ଶ୍ରେଷ୍ଠ ଅଧ୍ୟାୟ । ଏଥିରେ ଥିବା ଭକ୍ତ ପୁରୁଷଙ୍କର ଲକ୍ଷଣକୁ ପ୍ରତ୍ୟହ ସ୍ମରଣ କରିବା ଉଚିତ୍ ।

ଅର୍ଜୁନ କହିଲେ :—ଏହିପରି ସର୍ବଦା ତୁମ୍ଭଠାରେ ଧ୍ୟାନ ରଖି ଯେଉଁମାନେ ତୁମ୍ଭର ଉପାସନା କରନ୍ତି ଏବଂ ଯେଉଁମାନେ ପୁଣି ତୁମ୍ଭର ଅବିନାଶୀ ଅବ୍ୟକ୍ତ ସ୍ୱରୂପର ଧ୍ୟାନ କରନ୍ତି ଏହି ଉଭୟଙ୍କ ମଧ୍ୟରେ କେଉଁ ଯୋଗୀ ଶ୍ରେଷ୍ଠ ? ୧ ।

ଶ୍ରୀ ଭଗବାନ୍ କହିଲେ—ସବୁବେଳେ ମୋତେ ଧ୍ୟାନକରି ମୋଠାରେ ମନକୁ ସମର୍ପଣ କରି, ପରମଶ୍ରଦ୍ଧା ଭାବରେ ଯେ ବ୍ୟକ୍ତି ମୋର ଉପାସନା କରନ୍ତି, ତାହାଙ୍କୁ ମୁଁ ଶ୍ରେଷ୍ଠ ଯୋଗୀ ବୋଲି ମନେକରେ । ୨ ।

ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି, ସର୍ବତ୍ର ସମବୁଦ୍ଧି ରଖି ଯେଉଁ ପୁରୁଷ ଦୃଢ଼, ଅଚଳ, ଧୀର, ଅଚିନ୍ତ୍ୟ, ସର୍ବବ୍ୟାପୀ, ଅବ୍ୟକ୍ତ, ଅବର୍ଣ୍ଣନୀୟ ଏବଂ ଅବିନାଶୀ ସ୍ୱରୂପକୁ ଉପାସନା କରନ୍ତି ଏବଂ ସମସ୍ତ ପ୍ରାଣୀଙ୍କ ହିତରେ ଥାନ୍ତି ସେ କେବଳ ମୋତେ ପାଇପାରନ୍ତି । ୩,୪ ।

ଯାହାଙ୍କର ଚିତ୍ତ ଅବ୍ୟକ୍ତ ଉପାସନାରେ ଲିପ୍ତ, ତାହାଙ୍କର କଷ୍ଟ ଅଧିକ; କାରଣ ଦେହଧାରୀ ମନୁଷ୍ୟ ଅତି କଷ୍ଟରେ ଅବ୍ୟକ୍ତ ଗତିକୁ ଲାଭକରେ । ୫ ।

ଟିପ୍ପଣୀ—ଦେହଧାରୀ ମନୁଷ୍ୟ ଅମୃତ ସ୍ୱରୂପକୁ କେବଳ କଳ୍ପନା କରିପାରେ । ମାତ୍ର ଏହି ଅମୃତ ସ୍ୱରୂପ ପାଇଁ ତାହା ନିକଟରେ ଗୋଟିଏ ମଧ୍ୟ ନିଶ୍ଚୟାତ୍ମକ ଶବ୍ଦ ନାହିଁ । ସୁତରାଂ ସେ ନିଷେଧାତ୍ମକ "ନେତି" ଶବ୍ଦକୁ ପ୍ରୟୋଗ କରି ସନ୍ତୋଷ ଲାଭ କରେ । ଅତଏବ ଯେଉଁମାନେ ମୂର୍ତ୍ତିପୂଜା ମାନନ୍ତି ନାହିଁ, ସୂକ୍ଷ୍ମରୂପରେ ଦେଖିଲେ ଜଣାଯିବ ଯେ, ସେମାନେ ମୂର୍ତ୍ତିପୂଜକ ଅଟନ୍ତି । ପୁସ୍ତକକୁ ପୂଜା କରିବା, ମନ୍ଦିରକୁ ଯାଇ ପୂଜା କରିବା, ଗୋଟିଏ ଦିଗକୁ ମୁହଁ କରି ପୂଜା କରିବା ଇତ୍ୟାଦି ସାକାର ପୂଜାର ଲକ୍ଷଣ । ଏହା ସମସ୍ତେ ଜାଣିବା ଉଚିତ ଯେ ସାକାର ପଛରେ ନିରାକାର ଅଚିନ୍ତ୍ୟ ସ୍ୱରୂପ ରହିଅଛନ୍ତି । ଭକ୍ତିର ଅନ୍ତିମ ଲକ୍ଷଣ ଏହି ଯେ ଭକ୍ତ ଭଗବାନଙ୍କଠାରେ ଲୟପ୍ରାପ୍ତ ହୋଇ ଶେଷରେ କେବଳ ଏକ ଅଦ୍ୱିତୀୟ ଅରୂପୀ ଭଗବାନ ରୂପରେ ରହିଯାନ୍ତି । କିନ୍ତୁ ସାକାର ଉପାସନା ଦ୍ୱାରା ଏହି ସ୍ଥିତିକୁ ପାଇବା ଅତୀବ ସହଜ ଅଟେ । ଏହି ହେତୁରୁ ନିରାକାରଙ୍କ ଏକାବେଳକେ ସିଧା ଲାଭ କରିବା ମାର୍ଗକୁ କଷ୍ଟସାଧ୍ୟ ବୋଲି କୁହାଯାଇଅଛି ।

ପରନ୍ତୁ ହେ ପାର୍ଥ, ଯେଉଁମାନେ ମତ୍ପରାୟଣ ହୋଇ, ମୋ'ଠାରେ ସମସ୍ତ କର୍ମକୁ ସମର୍ପଣ କରି ଏକନିଷ୍ଠାରେ ଧ୍ୟାନମଗ୍ନ ହୋଇ ମୋତେ ଉପାସନା କରନ୍ତି ଏବଂ ମୋ'ଠାରେ ଯେଉଁମାନେ ଚିତ୍ତକୁ ନିବିଷ୍ଟ କରି ଅଛନ୍ତି, ସେହିମାନଙ୍କୁ ମୁଁ ଏହି ମୃତ୍ୟୁରୂପକ ସଂସାର-ସାଗରରୁ ଅବିଳମ୍ବେ ଉଦ୍ଧାର କରିନିଏ । ୬,୭ ।

ତୁମେ ମୋ'ଠାରେ ମନକୁ ସ୍ଥିର କର, ମୋ'ଠାରେ ବୁଦ୍ଧିକୁ ନିବିଷ୍ଟ କର, ତାହାହେଲେ ଦେହାନ୍ତରେ ତୁମ୍ଭେ ମୋତେ ନିଶ୍ଚୟ ପାଇବ । ୮ ।

ଯଦି ତୁମ୍ଭେ ମୋ’ଠାରେ ମନକୁ ସ୍ଥିର ରଖିବାକୁ ଅସମର୍ଥ ହୁଅ, ତେବେ ହେ ଧନଞ୍ଜୟ ! ଅଭ୍ୟାସ ଯୋଗ ସାଧନ କରି ମୋତେ ପାଇବାକୁ ଇଚ୍ଛା ରଖ । ୯ ।

ଏହିପରି ଅଭ୍ୟାସ ଯୋଗ କରିବାକୁ ଯଦି ତୁମ୍ଭେ ଅସମର୍ଥ ହୁଅ ତେବେ ସମସ୍ତ କର୍ମ ମୋ’ଠାରେ ଅର୍ପଣ କର ଏବଂ ଏହି ପ୍ରକାରେ ମୋ’ ନିମିତ୍ତ କର୍ମ କରୁ କରୁ ମଧ୍ୟ ତୁମ୍ଭେ ମୋକ୍ଷ ପାଇପାରିବ । ୧୦ ।

ଟିପ୍ପଣୀ—ଅଭ୍ୟାସ କହିଲେ ଚିତ୍ତବୃତ୍ତି ନିରୋଧ କରିବାର ସାଧନା; ଜ୍ଞାନ କହିଲେ ଶ୍ରବଣ ମନନାଦି; ଧ୍ୟାନ କହିଲେ ଉପାସନାର ଅର୍ଥକୁ ବୁଝାଏ । ଏମାନଙ୍କର ଫଳସ୍ୱରୂପ କର୍ମଫଳତ୍ୟାଗ ଅବସ୍ଥା ନ ଆସିଲେ, ସେହି ଅଭ୍ୟାସ ଅଭ୍ୟାସ ନୁହେଁ, ଜ୍ଞାନ ଜ୍ଞାନ ନୁହେଁ, ତଥା ଧ୍ୟାନ ଧ୍ୟାନ ନୁହେଁ ବୋଲି ବୁଝିବାକୁ ହେବ ।

ମୋ ନିମିତ୍ତ କର୍ମ କରିବାକୁ ଯେତିକି ସାମର୍ଥ୍ୟ ଦରକାର ତାହା ଯଦି ତୁମ୍ଭର ନ ଥାଏ ତେବେ ଯତ୍ନପୂର୍ବକ ସମସ୍ତ କର୍ମର ଫଳକୁ ତ୍ୟାଗ କର । ୧୧ ।

ଅଭ୍ୟାସ ମାର୍ଗ ଅପେକ୍ଷା ଜ୍ଞାନମାର୍ଗ ଶ୍ରେୟସ୍କର । ଜ୍ଞାନମାର୍ଗ ଅପେକ୍ଷା ଧ୍ୟାନମାର୍ଗର ଯୋଗ୍ୟତା ଅଧିକ ଏବଂ ଏହି ଧ୍ୟାନମାର୍ଗ ଅପେକ୍ଷା ପୁଣି କର୍ମ ଫଳ ତ୍ୟାଗ ଶ୍ରେଷ୍ଠ । କାରଣ ଏରୂପ ତ୍ୟାଗଦ୍ୱାରା ଶୀଘ୍ର ଶାନ୍ତି ମିଳେ । ୧୨ ।

ଯେ କାହାରିକୁ ଦ୍ୱେଷ କରନ୍ତି ନାହିଁ, ଯେ ସମସ୍ତ ପ୍ରାଣୀଙ୍କ ପ୍ରତି ମିତ୍ରପରି ଆଚରଣ କରନ୍ତି, ଯେ ଦୟାବାନ୍, ଯେ ମମତା ଓ ଅହଙ୍କାରଶୂନ୍ୟ, ଦୁଃଖସୁଖରେ ଯେ ସମଭାବାପନ୍ନ ଓ କ୍ଷମାଶୀଳ, ଯେ ସଦା ସନ୍ତୁଷ୍ଟ, ଯୋଗଯୁକ୍ତ, ସଂଯତେନ୍ଦ୍ରିୟ ଏବଂ ଦୃଢ଼ନିଶ୍ଚୟୀ ଅଟନ୍ତି, ଯେ ମନ ଓ ବୁଦ୍ଧିକୁ ମୋ’ଠାରେ ଅର୍ପଣ କରି ଦେଇଅଛନ୍ତି ଏଭଳି ଭକ୍ତସ୍ୱରୂପ ମୋର ପ୍ରିୟ ଅଟନ୍ତି । ୧୩, ୧୪ ।

ଯାହାଙ୍କଠାରୁ ଲୋକେ କଷ୍ଟ ଉଦ୍ବେଗ ପାନ୍ତି ନାହିଁ କିମ୍ବା ଯେ ମଧ୍ୟ ଲୋକଙ୍କଠାରୁ କଷ୍ଟ ମାତ୍ର ଉଦ୍ବେଗ ପାନ୍ତି ନାହିଁ, ଯେ ହର୍ଷ, କ୍ରୋଧ, ଈର୍ଷା ଭୟ ଓ ଉଦ୍ବେଗରୁ ମୁକ୍ତ ସେ ମୋର ପ୍ରିୟ ଅଟନ୍ତି । ୧୫ ।

ଯାହାଙ୍କର କୌଣସି ବିଷୟ ପ୍ରତି ଅଳ ଇଚ୍ଛା ନ ଥାଏ, ଯେ ପବିତ୍ର କାର୍ଯ୍ୟଦକ୍ଷ, ( କାର୍ଯ୍ୟଦକ୍ଷ ହେଲେ ମଧ୍ୟ ) ଯେ ତଟସ୍ଥ ଓ ଚିନ୍ତାଶୂନ୍ୟ, ଯେ ସବୁ ପ୍ରକାର ସଙ୍କଳ୍ପକୁ ତ୍ୟାଗ କରିଛନ୍ତି ସେ ମୋର ଭକ୍ତ ଓ ସେ ମୋର ପ୍ରିୟ । ୧୬ ।

କୌଣସି ବିଷୟରେ ଯାହାଙ୍କର ହର୍ଷ ହୁଏ ନାହିଁ, କିମ୍ବା ଯାହାଙ୍କର ଦ୍ୱେଷ ନାହିଁ, ଯେ ଚିନ୍ତା କରନ୍ତି ନାହିଁ, ଯେ ଆଶା ପୋଷଣ କରନ୍ତି ନାହିଁ, ଯେ ଶୁଭାଶୁଭକୁ ତ୍ୟାଗ କରିଛନ୍ତି, ସେହି ଭକ୍ତିପରାୟଣ ବ୍ୟକ୍ତି ମୋର ପ୍ରିୟ ଅଟନ୍ତି । ୧୭ ।

ଶତ୍ରୁ ମିତ୍ର, ମାନ ଅପମାନ, ଶୀତ ଗରମ, ସୁଖ ଦୁଃଖ ଇତ୍ୟାଦି ସମସ୍ତ ବିଷୟରେ ଯେ ସମଜ୍ଞାନପନ୍ନ, ଯେ ଆସକ୍ତିଶୂନ୍ୟ, ଯେ ନିନ୍ଦା ଓ ପ୍ରଶଂସାକୁ ସମାନ ମନେ କରନ୍ତି, ଯେ ମୌନାବଲମ୍ବୀ, ଯାହା କିଛି ମିଳିଲା ତହିଁରେ ଯେ ସନ୍ତୁଷ୍ଟ, ଯାହାଙ୍କର ରହିବାର ସ୍ଥାନ ଅନିର୍ଦ୍ଦିଷ୍ଟ, ଯାହାଙ୍କର ଚିତ୍ତ ସ୍ଥିର ଏପରି ମୁକ୍ତ ତଥା ଭକ୍ତ ମୋର ପ୍ରିୟ ଅଟନ୍ତି । ୧୮,୧୯ ।

ଏପରି ଅମୃତତୁଲ୍ୟ ଜ୍ଞାନକୁ ଯେ ମତ୍ପରାୟଣ ହୋଇ ଶ୍ରଦ୍ଧାପୂର୍ବକ ସେବନ କରନ୍ତି ସେ ମୋର ଅତ୍ୟନ୍ତ ପ୍ରିୟଭକ୍ତ ଅଟନ୍ତି । ୨୦ ।

ଓଁ ତତ୍ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପକ ଉପନିଷଦ୍ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀକୃଷ୍ଣାର୍ଜୁନ ସଂବାଦର ଭକ୍ତିଯୋଗ ନାମକ ଦ୍ୱାଦଶ ଅଧ୍ୟାୟର ସମାପ୍ତି ।

——※——

( ୧୩ )

# କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗଯୋଗ

ଏହି ଅଧ୍ୟାୟରେ ଶରୀର ଓ ଶରୀରୀର ଭେଦକୁ କୁହାଯାଇଅଛି ।

ଶ୍ରୀ ଭଗବାନ୍ କହିଲେ :—ହେ କୌନ୍ତେୟ, ଏହି ଶରୀର କ୍ଷେତ୍ର ଅଟେ, ଏବଂ ଏହାକୁ ଯେ ଜାଣନ୍ତି ତାହାଙ୍କୁ ତତ୍ତ୍ୱଜ୍ଞ ପୁରୁଷମାନେ କ୍ଷେତ୍ରଜ୍ଞ ବୋଲି କହନ୍ତି । ୧ ।

ହେ ଭାରତ, ସମସ୍ତ କ୍ଷେତ୍ରରେ ତଥା ଶରୀରରେ ମୁଁ ରହିଥିବାରୁ ମୋତେ କ୍ଷେତ୍ରଜ୍ଞ ବୋଲି ଜାଣ । କ୍ଷେତ୍ର ଓ କ୍ଷେତ୍ରଜ୍ଞ ମଧ୍ୟରେ ପାର୍ଥକ୍ୟର ଜ୍ଞାନ ହେଉଛି ମୋ' ମତରେ ଯଥାର୍ଥ ଜ୍ଞାନ । ୨ ।

ଏହି କ୍ଷେତ୍ରଜ୍ଞ କ'ଣ ଏବଂ କି ପ୍ରକାର, ଏହାର କି କି ବିକାର ଅଛି ଏବଂ କେଉଁଠାରୁ ଆସିଅଛି, କ୍ଷେତ୍ରଜ୍ଞ କିଏ ଏବଂ ତାହାଙ୍କର କି ଶକ୍ତି ଅଛି ଏହା ସବୁ ମୋ'ଠାରୁ ସଂକ୍ଷେପରେ ଶୁଣ । ୩ ।

ବିବିଧ ଛନ୍ଦରେ ଏବଂ ଭିନ୍ନ ଭିନ୍ନ ପ୍ରକାରରେ ଏବଂ ଉଦାହରଣ-ପୂର୍ଣ୍ଣ ଯୁକ୍ତି ଦେଖାଇ ନିଶ୍ଚୟାତ୍ମକ ବ୍ରହ୍ମସୂଚକ ବାକ୍ୟଦ୍ୱାରା ଋଷିଗଣ ଏ ବିଷୟରେ ବହୁତ କହିଅଛନ୍ତି । ୪ ।

ମହାଭୂତ, ଅହଂକାର, ବୁଦ୍ଧି, ପ୍ରକୃତି, ଦଶ ଇନ୍ଦ୍ରିୟ, ଏକମନ, ପାଞ୍ଚ ବିଷୟ, ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ସଂଘାତ, ଚେତନା-ଶକ୍ତି, ଧୃତି ଇତ୍ୟାଦି ବିକାର ସହିତ କ୍ଷେତ୍ରକୁ ସଂକ୍ଷେପରେ କୁହାଗଲା ।୫,୬।

ଟିପ୍ପଣୀ—ମହାଭୂତ ପାଞ୍ଚୋଟି, ଯଥା—ପୃଥିବୀ; ଜଳ, ତେଜ, ବାୟୁ ଓ ଆକାଶ । ଅହଂକାର ଅର୍ଥାତ୍ ଶରୀର ବିଷୟରେ ଥିବା ଅହଂତା ଅଥବା ଅହଂଭାବ । ଅବ୍ୟକ୍ତ ଅର୍ଥାତ୍ ଅଦୃଶ୍ୟରେ ଥିବା ମାୟା ଅଥବା ପ୍ରକୃତି ।

ଦଶଇନ୍ଦ୍ରିୟ-ମଧ୍ୟରେ ପାଞ୍ଚ ଜ୍ଞାନେନ୍ଦ୍ରିୟ—ନାକ, କାନ, ଆଖି, ଜିଭ ଓ ଚର୍ମ । ପାଞ୍ଚ କର୍ମେନ୍ଦ୍ରିୟ—ହାତ, ପାଦ, ମୁହଁ ଓ ଦୁଇ ଗୁହ୍ୟେନ୍ଦ୍ରିୟ; ପାଞ୍ଚ ଗୋଚର ଅର୍ଥାତ୍, ପାଞ୍ଚଜ୍ଞାନେନ୍ଦ୍ରିୟର ପାଞ୍ଚ ବିଷୟ—ଶୁଙ୍ଘିବା, ଶୁଣିବା, ଦେଖିବା, ସ୍ୱାଦ ବାରିବା ଓ ସ୍ପର୍ଶ କରିବା । ସଙ୍ଘାତ ଅର୍ଥାତ୍ ଶରୀର ତତ୍ତ୍ୱମାନଙ୍କର ପରସ୍ପରକୁ ସାହାଯ୍ୟ କରିବାର ଶକ୍ତି । ଧୃତି ଅର୍ଥାତ୍ ଧୈର୍ଯ୍ୟ ରୂପକ ସୂକ୍ଷ୍ମ ଗୁଣ ନୁହେଁ; ଏହା ହେଉଛି ଶରୀର ପରମାଣୁମାନେ ଏକ ଅନ୍ୟକୁ ଟାଣି ରଖିବାର ଗୁଣ । ଏହି ଗୁଣ କେବଳ ଅହଂଭାବ ଉପରେ ନିର୍ଭର କରେ ଏବଂ ଏହି ଅହଂଭାବ ଅବ୍ୟକ୍ତ ପ୍ରକୃତିରେ ରହିଅଛି । ଏହି ଅହଂଭାବକୁ ମୋହଶୂନ୍ୟ ମନୁଷ୍ୟ ଜ୍ଞାନପୂର୍ବକ ତ୍ୟାଗ କରିଥାଏ । ଏହି କାରଣରୁ ମରଣ କାଳରେ କିମ୍ବା ଅନ୍ୟ କିଛି ଆଘାତ ପାଇଲା ବେଳେ ସେ ଦୁଃଖ ଅନୁଭବ କରେ ନାହିଁ । ଜ୍ଞାନୀ, ଅଜ୍ଞାନ ସମସ୍ତେ ଶେଷରେ ଏହି ବିକାରଯୁକ୍ତ କ୍ଷେତ୍ରକୁ ତ୍ୟାଗ କରିବାକୁ ବାଧ୍ୟ ।

ଅଭିମାନଶୂନ୍ୟତା, ଦମ୍ଭହୀନତା, ଅହିଂସା, କ୍ଷମା, ସରଳତା, ଗୁରୁସେବା, ପବିତ୍ରତା, ସ୍ଥିରତା, ଆତ୍ମସଂଯମ, ଇନ୍ଦ୍ରିୟ ବିଷୟରେ ବୈରାଗ୍ୟ, ନିରହଂକାରିତା, ଜନ୍ମ, ମରଣ, ଜରା, ବ୍ୟାଧି ଓ ଦୁଃଖ ଇତ୍ୟାଦିର ଦୋଷକୁ ନିରନ୍ତର ଚିନ୍ତା କରିବା, ପୁତ୍ର, ସ୍ତ୍ରୀ, ଘର ପ୍ରଭୃତି ପ୍ରତି ମୋହ ମମତାର ଅଭାବ, ପ୍ରିୟ ଅପ୍ରିୟରେ ନିତ୍ୟ ସମଭାବ, ମୋ'ଠାରେ ଏକାନ୍ତ ଧ୍ୟାନ ସହକାରେ ଏକନିଷ୍ଠ ଭକ୍ତି, ନିର୍ଜନ ବାସ, ଜନ ସମୂହରେ ସମ୍ମିଳିତ ହେବାକୁ ଅନିଚ୍ଛା, ଆଧ୍ୟାତ୍ମିକ ଜ୍ଞାନର ନିତ୍ୟପର ବିଚାର ଓ ଆତ୍ମଦର୍ଶନ ଏହି ସବୁକୁ ଜ୍ଞାନ କୁହାଯାଏ । ଏଥିରୁ ଯାହା ବିପରୀତ ତାହା ଅଜ୍ଞାନ ଅଟେ । ୭, ୮, ୯, ୧୦, ୧୧ ।

ଯାହାଙ୍କୁ ଜାଣିଲେ ମୋକ୍ଷ ମିଳେ, ସେହି ଜ୍ଞେୟ କ'ଣ ତାହା ମୁଁ ତୁମ୍ଭଙ୍କୁ କହିବି । ସେ ଅନାଦି ବ୍ରହ୍ମ ଅଟନ୍ତି । ତାଙ୍କୁ ସତ୍ କୁହାଯାଇ ନ ପାରେ; କିମ୍ବା ଅସତ୍ ମଧ୍ୟ କୁହାଯାଇ ନ ପାରେ । ୧୨ ।

ଟିପ୍ପଣୀ—ପରମେଶ୍ୱରଙ୍କୁ ସତ୍ କିମ୍ବା ଅସତ୍ କିଛି କୁହାଯାଇ ନ ପାରେ । କୌଣସି ଗୋଟିଏ ଶବ୍ଦରେ ତାହାଙ୍କୁ ବ୍ୟାଖ୍ୟା କରିବା କିମ୍ବା ତାହାଙ୍କର ପରିଚୟ ଦେବା ଅସମ୍ଭବ । ଏହିପରି ତାହାଙ୍କର ସ୍ୱରୂପ ଗୁଣାତୀତ ଅଟେ ।

ଯେଉଁ ଆଡ଼କୁ ଗୃହିଁବ ସେହିଆଡ଼େ ତାହାଙ୍କର ହାତ, ପାଦ, ଚକ୍ଷୁ, ମୁଣ୍ଡ, ମୁହଁ ଓ କାନ ଦେଖି ପାରିବ । ସର୍ବତ୍ର ବ୍ୟାପ୍ତ ହୋଇ ସେ ଏହି ଲୋକରେ ବିଦ୍ୟମାନ ଅଛନ୍ତି । ୧୩ ।

ତାହାଙ୍କଠାରେ ଇନ୍ଦ୍ରିୟମାନଙ୍କ ଗୁଣର ଆଭାସ ମିଳେ । ତଥାପି ସେହି ସ୍ୱରୂପ ଇନ୍ଦ୍ରିୟଶୂନ୍ୟ ଏବଂ ସବୁ ବିଷୟରେ ନିର୍ଲିପ୍ତ । ଅଧିକର ମଧ୍ୟ ସେ ସମସ୍ତଙ୍କୁ ଧାରଣ କରିଛନ୍ତି । ତାହାଙ୍କର କୌଣସି ଗୁଣ ନ ଥିଲେ ମଧ୍ୟ ସେ ସବୁଗୁଣ ଉପଭୋଗ କରନ୍ତି । ୧୪ ।

ସେ ପ୍ରାଣୀମାନଙ୍କ ବାହାରେ ଅଛନ୍ତି, ଭିତରେ ମଧ୍ୟ ଅଛନ୍ତି । ତାହାଙ୍କର ଗତି ଅଛି, ପୁଣି ଗତି ନାହିଁ । ସେ ଅତି ସୂକ୍ଷ୍ମ ହେବାରୁ ତାହାଙ୍କୁ ଜାଣି ହୁଏ ନାହିଁ । ସେ ଦୂରରେ ଥାନ୍ତି, ପୁଣି ନିକଟରେ ମଧ୍ୟ ଥାନ୍ତି । ୧୫ ।

ଟିପ୍ପଣୀ—ଯେ ତାହାଙ୍କୁ ଚିହ୍ନି ପାରିଛନ୍ତି ସେ ତାହାର ଭିତରେ ଥାନ୍ତି । ଗତି ଓ ସ୍ଥିତି, ଶାନ୍ତି ଓ ଅଶାନ୍ତି ଆମ୍ଭେମାନେ ଅନୁଭବ କରୁଁ । ଏହି ସମସ୍ତ ଭାବ ତାହାଙ୍କଠାରୁ ଉତ୍ପନ୍ନ ହୋଇଅଛି । ତେଣୁ ସେ ଗତିମାନ୍, ପୁଣି ସେ ସ୍ଥିର ଅଟନ୍ତି ।

ସେ ପ୍ରାଣୀମାନଙ୍କଠାରେ ଅବିଭକ୍ତ ଭାବରେ ବିଦ୍ୟମାନ ଥିଲେ ମଧ୍ୟ ବିଭକ୍ତ ହୋଇ ରହିଲା ପରି ଦେଖା ଯାଉଛନ୍ତି । ସେ ଜ୍ଞେୟ, ସେ ପ୍ରାଣୀମାନଙ୍କର ପାଳନକର୍ତ୍ତା, ସଂହାରକର୍ତ୍ତା ଏବଂ ଉତ୍ପାଦନକର୍ତ୍ତା ଅଟନ୍ତି । ୧୬ ।

ସେ ଜ୍ୟୋତିର ଜ୍ୟୋତି, ସେ ଅନ୍ଧକାରର ଅତୀତ ବୋଲି ବୁଝାଯାଏ । ସେ ଜ୍ଞାନ, ଯାହା କିଛି ଜାଣିବାର ଯୋଗ୍ୟ ତାହା ହେଉଛନ୍ତି ସେହି । ଜ୍ଞାନଦ୍ୱାରା ଯାହାଙ୍କୁ ଲାଭ କରିଯାଏ ସେ ମଧ୍ୟ ସେହି । ସେ ସମସ୍ତଙ୍କର ହୃଦୟରେ ଅଧିଷ୍ଠିତ । ୧୭ ।

କ୍ଷେତ୍ର ଜ୍ଞାନ ଓ ଜ୍ଞେୟ କାହାକୁ ବୁଝାଯାଏ ତାହା ମୁଁ ଏପରି ସଂକ୍ଷେପରେ କହିଲି । ଏହା ଜାଣି ମୋର ଭକ୍ତ ମୋ ଭାବକୁ ଲାଭ କରିବାକୁ ଯୋଗ୍ୟ ହୁଏ ।୧୮।

ପ୍ରକୃତି ଓ ପୁରୁଷ ଦୁହିଙ୍କୁ ଅନାଦି ବୋଲି ଜାଣ । ବିକାର ଓ ଗୁଣ ପ୍ରକୃତିରୁ ଉତ୍ପନ୍ନ ହୁଏ ଏହା ମଧ୍ୟ ଜାଣ । ୧୯ ।

ପ୍ରକୃତିକୁ କାର୍ଯ୍ୟ ଓ କାରଣର ହେତୁ ବୋଲି ବୁଝାଯାଏ । ପୁରୁଷକୁ ସୁଖ ଦୁଃଖ ଭୋଗ କରିବାର ହେତୁ କହନ୍ତି । ୨୦ ।

ପୁରୁଷ ପ୍ରକୃତିରେ ରହିଥିବାରୁ ପ୍ରକୃତିରୁ ଜାତ ହେଉଥିବା ସବୁ ଗୁଣକୁ ଉପଭୋଗ କରେ । ଗୁଣସହିତ ପୁରୁଷର ଏହିପରି ଯେଉଁ ମିଳନ ହୁଏ ଏହି ମିଳନହିଁ ତାହାର ଉତ୍ତମ ଓ ଅଧମ ଯୋନିରେ ଜନ୍ମଗ୍ରହଣ କରିବାର କାରଣ । ୨୧ ।

ଟିପ୍ପଣୀ—ପ୍ରକୃତିକୁ ଆମ୍ଭେମାନେ ସାଧାରଣତଃ ମାୟାବୋଲି ଜାଣୁ। ପୁରୁଷ କହିଲେ ଜୀବକୁ ବୁଝାଏ । ଜୀବ ମାୟା ଅର୍ଥାତ୍ ମୂଳ ସ୍ୱଭାବର ବଶୀଭୂତ ହୋଇ ସତ୍ତ୍ୱ, ରଜ ଓ ତମରୁ ଉତ୍ପନ୍ନ କର୍ମଫଳମାନ ଉପଭୋଗ କରେ । ଏହି ହେତୁ ନିଜର କର୍ମାନୁସାରେ ପୁନର୍ଜନ୍ମ ଗ୍ରହଣ କରେ ।

ଏହି ଦେହରେ ଯେଉଁ ପରମପୁରୁଷ ଅଛନ୍ତି ସେ ସବୁ ଦେଖୁଛନ୍ତି, ସବୁ ଅନୁମୋଦନ କରୁଛନ୍ତି । ତାହାଙ୍କୁ ଭର୍ତ୍ତା, ଭୋକ୍ତା, ମହେଶ୍ୱର ଓ ପରମାତ୍ମା ବୁଝାଯାଏ । ୨୨ ।

ଯେଉଁ ବ୍ୟକ୍ତି ଏପରିଭାବରେ ପୁରୁଷକୁ ଏବଂ ଗୁଣମୟୀ ପ୍ରକୃତିକୁ ଜାଣନ୍ତି ସେ ଯେ କୌଣସି ପ୍ରକାର କାର୍ଯ୍ୟ କଲେ ମଧ୍ୟ ଆଉ ଜନ୍ମଗ୍ରହଣ କରନ୍ତି ନାହିଁ । ୨୩ ।

ଟିପ୍ପଣୀ—୨, ୯, ୧୨ ଓ ଅନ୍ୟାନ୍ୟ ଅଧ୍ୟାୟମାନଙ୍କ ସାହାଯ୍ୟରେ ଆମ୍ଭେମାନେ ସ୍ପଷ୍ଟ ବୁଝି ପାରିବା ଯେ ଏହି ଶ୍ଳୋକ ସ୍ୱେଚ୍ଛାଚାରିତାକୁ ସମର୍ଥନ ନ କରି ବରଂ ଭକ୍ତିର ମହିମାକୁ ସୂଚନା କରୁଅଛି । କର୍ମ ମାତ୍ରକେ ଜୀବର ବନ୍ଧନକାରକ; କିନ୍ତୁ ସେ ଯଦି ସମସ୍ତ କର୍ମକୁ ପରମାତ୍ମାଙ୍କଠାରେ ଅର୍ପଣ କରିଦିଏ ତାହାହେଲେ ବନ୍ଧନ-ମୁକ୍ତ ହୁଏ । ଏହିପରି ଯେ କର୍ତ୍ତାପଣିଆର ଅହଂଭାବକୁ ନାଶ କରି ପାରିଛନ୍ତି ଏବଂ ଚବିଶଘଣ୍ଟା କାଳ ଯେ ପରମାତ୍ମାଙ୍କୁ ଦେଖି ପାରୁଛନ୍ତି ସେ ପାପକର୍ମ କରି ନ ପାରନ୍ତି । ପାପର ମୂଳ ଅଭିମାନ ଅଟେ । ଯେଉଁଠାରେ ମୁଁ ଭାବ ନାହିଁ ସେଠାରେ ପାପ ନ ଥାଏ । ଏହି ଶ୍ଳୋକ ପାପକର୍ମ ନ କରିବାର ଯୁକ୍ତି ଅଟେ ।

କେହି କେହି ଧ୍ୟାନମାର୍ଗକୁ ଅନୁସରି ନିଜେ ନିଜ ଭିତରେ ଆତ୍ମାକୁ ଦେଖନ୍ତି । ଅନ୍ୟ କେହି କେହି ଜ୍ଞାନମାର୍ଗଦ୍ୱାରା କେହି କେହି କର୍ମମାର୍ଗ-ଦ୍ୱାରା ଆତ୍ମଦର୍ଶନ ଲାଭ କରନ୍ତି । ୨୪ ।

ଆହୁରି ମଧ୍ୟ ଯେଉଁମାନେ ଏହି ମାର୍ଗର ବିଷୟ କିଛି ଜାଣି ନ ଥାନ୍ତି ସେମାନେ ଅନ୍ୟ ନିକଟରୁ ପରମାତ୍ମାଙ୍କ ବିଷୟ ଶୁଣି ଏବଂ ସେହି ଶୁଣିବାବିଷୟର ଉପରେ ଶ୍ରଦ୍ଧା ରଖି ତହିଁରେ ମନପ୍ରାଣ ଢାଳି ଦେଇ ଉପାସନା କରନ୍ତି । ଏପରି ଲୋକେ ମଧ୍ୟ ମୃତ୍ୟୁକୁ ପାରି ହୋଇଯାନ୍ତି ।୨୫।

ଯାହାକିଛି ଚର ଅଚର ବସ୍ତୁ ଉତ୍ପନ୍ନ ହେଉଅଛି ହେ ଭରତର୍ଷଭ, ସେ ସବୁ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଅର୍ଥାତ୍ ପ୍ରକୃତି ଓ ପୁରୁଷର ସଂଯୋଗରୁ ଉତ୍ପନ୍ନ ହେଉଅଛି ବୋଲି ଜାଣ । ୨୬ ।

ସମସ୍ତ ନାଶଶୀଳ ପ୍ରାଣୀଙ୍କ ଭିତରେ ଅବିନାଶୀ ପରମେଶ୍ୱର ସମଭାବରେ ରହିଥିବାର ଯେ ଜାଣିଛନ୍ତି ସେ ଏକା ତାହାଙ୍କୁ ଜାଣିଛନ୍ତି । ୨୭ ।

ଈଶ୍ୱର ସର୍ବତ୍ର ସମଭାବରେ ରହିଛନ୍ତି ବୋଲି ଯେ ଦେଖୁଛନ୍ତି, ସେ କଦାପି ନିଜେ ନିଜର ଅନିଷ୍ଟ କରନ୍ତି ନାହିଁ । ସୁତରାଂ ସେ ପରମ ଗତି ପାନ୍ତି । ୨୮ ।

ଟିପ୍ପଣୀ—ଈଶ୍ୱର ସମଭାବରେ ଅବସ୍ଥିତ ଥିବାର ଯେ ଦେଖିପାରନ୍ତି ସେ ନିଜେ ତାହଁରେ ମିଶିଯାନ୍ତି, ତାଙ୍କୁ ଅନ୍ୟ କିଛି ଦେଖାଯାଏ ନାହିଁ । ସୁତରାଂ ସେ ଆଉ ବିକାରବଶ ନ ହୋଇ ମୋକ୍ଷ ପାନ୍ତି ଏବଂ ନିଜେ ନିଜର ଶତ୍ରୁ ହୁଅନ୍ତି ନାହିଁ ।

ସର୍ବତ୍ର କେବଳ ପ୍ରକୃତି କର୍ମ କରୁଅଛି ବୋଲି ଯେ ଜାଣନ୍ତି ଏବଂ ସେହି କାରଣରୁ ଆତ୍ମାକୁ ଅକର୍ତ୍ତା ରୂପେ ମନେ କରନ୍ତି ସେ କେବଳ (ଈଶ୍ୱରଙ୍କୁ) ଜାଣନ୍ତି । ୨୯ ।

ଟିପ୍ପଣୀ—ଶୋଇଥିବା ମନୁଷ୍ୟର ଆତ୍ମା ଯେପରି ଶୋଇବା କ୍ରିୟାର କର୍ତ୍ତା ନୁହେଁ ମାତ୍ର ପ୍ରକୃତି ତାହାର ଶୋଇବା କାର୍ଯ୍ୟ କରେ, ସେପରି ନିର୍ବିକାର ମନୁଷ୍ୟ ସବୁ କର୍ମରେ ନିଜକୁ ଅକର୍ତ୍ତା ମନେକରେ ଓ ତାହାର ଆଖିକୁ କିଛି ଭଲ ମନ୍ଦ ଦେଖାଯାଏ ନାହିଁ । ପ୍ରକୃତି ବ୍ୟଭିଚାରିଣୀ ନୁହେଁ । ଅଭିମାନୀ ପୁରୁଷ ତାହାର ସ୍ୱାମୀ ହେଲେ ଏପରି ସଙ୍ଗରୁ ବିଷମ ବିକାର ଜାତ ହୁଏ ।

ଜୀବମାନେ ପୃଥକ୍ ଭାବରେ ରହିଥିଲେ ମଧ୍ୟ ଯେତେବେଳେ ଏପରି ପୃଥକତା ଭିତରେ ସେମାନଙ୍କର ଏକତା ଉପଲବ୍ଧି କରାଯାଇ ପାରେ ଏବଂ ଏକତାରୁ ସମସ୍ତ ସୃଷ୍ଟି ବିସ୍ତୃତି ଲାଭ କରେ' ବୋଲି ଯେ ବୁଝି ପାରନ୍ତି ସେତେବେଳେ ସେ ବ୍ରହ୍ମଙ୍କୁ ପାନ୍ତି । ୩୦ ।

ଟିପ୍ପଣୀ— ଅନୁଭବଦ୍ୱାରା ସବୁ ବ୍ରହ୍ମମୟ ଦେଖିବା ଅର୍ଥ ବ୍ରହ୍ମଲାଭ କରିବା । ଏପରି ଅବସ୍ଥାରେ ଜୀବ ଆଉ ଶିବଙ୍କଠାରୁ ଭିନ୍ନ ରହେ ନାହିଁ ।

ହେ କୌନ୍ତେୟ, ଏହି ଅବିନାଶୀ ପରମାତ୍ମା ଅନାଦି ଓ ନିର୍ଗୁଣ ହୋଇଥିବା କାରଣରୁ ଶରୀରରେ ଥାଇ ମଧ୍ୟ କିଛି କରନ୍ତି ନାହିଁ, କିମ୍ବା କାହିଁରେ ମଧ୍ୟ ଲିପ୍ତ ହୁଅନ୍ତି ନାହିଁ । ୩୧ ।

ସୂକ୍ଷ୍ମ ହୋଇଥିବା ହେତୁରୁ ଯେପରି ସର୍ବବ୍ୟାପୀ ଆକାଶ କାହିଁରେ ଲିପ୍ତ ହୁଏ ନାହିଁ, ସେହିପରି ସମସ୍ତଙ୍କ ଦେହରେ ଅବସ୍ଥିତ ଆତ୍ମା କାହିଁରେ ମଧ୍ୟ ଲିପ୍ତ ହୁଏ ନାହିଁ । ୩୨ ।

ଯେପରି ଗୋଟିଏ ସୂର୍ଯ୍ୟ ଏହି ସମସ୍ତ ଜଗତକୁ ଆଲୋକ ପ୍ରଦାନ କରେ, ସେହିପରି ହେ ଭାରତ, କ୍ଷେତ୍ରୀ ସମସ୍ତ କ୍ଷେତ୍ରକୁ ଆଲୋକିତ କରେ । ୩୩ ।

ଯେ ବ୍ୟକ୍ତି ଜ୍ଞାନଚକ୍ଷୁଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞର ପାର୍ଥକ୍ୟ ଏବଂ ପ୍ରକୃତିର ବନ୍ଧନରୁ ପ୍ରାଣୀମାନେ କିପରି ମୁକ୍ତ ପାନ୍ତି, ଏହା ଜାଣି ଅଛନ୍ତି ସେ ବ୍ରହ୍ମଙ୍କୁ ପାଇ ପାରନ୍ତି । ୩୪ ।

ଓଁ ତତ୍‌ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପକ ଉପନିଷଦ୍ ଅର୍ଥାତ୍ ବ୍ରହ୍ମ ବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀ କୃଷ୍ଣାର୍ଜୁନ ସମ୍ବାଦରେ କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗ ନାମକ ତ୍ରୟୋଦଶ ଅଧ୍ୟାୟର ସମାପ୍ତି ।



( ୧୪ )

# ଗୁଣତ୍ରୟ ବିଭାଗ ଯୋଗ

ଗୁଣମୟୀ ପ୍ରକୃତିର କେତେକ ପରିଚୟ ଦେଲା ପରେ ସହଜରେ ତିନିଗୁଣର ବର୍ଣ୍ଣନା ଏହି ଅଧ୍ୟାୟରେ ପଡ଼ୁଅଛି । ଏହା କରିବାକୁ ଯାଇ ଗୁଣାତୀତର ଲକ୍ଷଣ କ'ଣ ତାହା ଭଗବାନ ଶୁଣାଉଅଛନ୍ତି । ଦ୍ୱିତୀୟ ଅଧ୍ୟାୟରେ ସ୍ଥିତପ୍ରଜ୍ଞର ଯେଉଁ ସବୁ ଲକ୍ଷଣ ଦେଖାଯାଏ, ଦ୍ୱାଦଶଅଧ୍ୟାୟରେ ଭକ୍ତର ଯେଉଁ ଲକ୍ଷଣ ଦେଖାଯାଏ ଏହି ଅଧ୍ୟାୟରେ ଗୁଣାତୀତର ସେହିପରି ଲକ୍ଷଣ ଅଛି ।

ଶ୍ରୀ ଭଗବାନ୍ କହିଲେ—ଜ୍ଞାନ ମଧ୍ୟରେ ଯେଉଁ ପରମଜ୍ଞାନ ଅନୁଭବ କରି ମୁନିଗଣ ଦେହ ତ୍ୟାଗ ପରେ ପରମଗତି ଲାଭ କରନ୍ତି ସେହି ଜ୍ଞାନ ମୁଁ ପୁଣି ତୁମ୍ଭକୁ କହିବି । ୧ ।

ଏହି ଜ୍ଞାନର ଆଶ୍ରୟ ଗ୍ରହଣ କରି ଯେ ମୋର ଭାବକୁ ପାଇଛନ୍ତି, ସୃଷ୍ଟିର ଉତ୍ପତ୍ତି ସମୟରେ ସେମାନଙ୍କୁ ଆଉ ଜନ୍ମଗ୍ରହଣ କରିବାକୁ ପଡ଼େ ନାହିଁ, କିମ୍ବା ପ୍ରଳୟ କାଳରେ ସେମାନଙ୍କୁ ଆଉ ବ୍ୟଥା ପାଇବାକୁ ହୁଏ ନାହିଁ । ୨ ।

ହେ ଭାରତ, ମହଦ୍‌ବ୍ରହ୍ମ ଅର୍ଥାତ୍ ପ୍ରକୃତି ମୋର ଯୋନି, ମୁଁ ସେଥିରେ ଗର୍ଭ ସ୍ଥାପନ କଲେ ତହିଁରୁ ପ୍ରାଣୀମାନେ ଉତ୍ପନ୍ନ ହୁଅନ୍ତି । ୩ ।

ହେ କୌନ୍ତେୟ, ସମସ୍ତ ଯୋନିରୁ ଯେଉଁ ପ୍ରାଣୀମାନେ ଉତ୍ପନ୍ନ ହୁଅନ୍ତି ସେମାନଙ୍କର ଉତ୍ପତ୍ତି ସ୍ଥଳ ମୋର ପ୍ରକୃତି ଏବଂ ତହିଁରେ ବୀଜ ରୋପଣ କରିବା ପିତା ତଥା ପୁରୁଷ ମୁଁ ଅଟେ । ୪ ।

ହେ ମହାବାହୋ, ସତ୍ତ୍ୱ, ରଜ, ତମ, ଏମାନେ ପ୍ରକୃତିଜାତ ଗୁଣ । ସେମାନେ ଅବିନାଶୀ ଦେହଧାରୀ ଜୀବକୁ ଦେହରେ ବନ୍ଧନ କରନ୍ତି । ୫ ।

ତହିଁରେ ସତ୍ତ୍ୱଗୁଣ ନିର୍ମଳ, ସୁତରାଂ ତାହା ଉଜ୍ଜ୍ୱଳ ଓ ଅନାମୟ-କର ଅଟେ । ଏହି କାରଣରୁ ହେ ଅନଘ, ତାହା ଦେହୀକୁ ସୁଖ ଓ ଜ୍ଞାନ ବିଷୟରେ ବାନ୍ଧି ରଖେ । ୬ ।

ହେ କୌନ୍ତେୟ, ରଜୋଗୁଣର ସ୍ୱଭାବ ରାଗାତ୍ମକ । ତହିଁରୁ ତୃଷ୍ଣା ଓ ଆସକ୍ତି ଜାତ ହୁଏ । ତେଣୁ ତାହା ଦେହଧାରୀକୁ କର୍ମ ପାଶରେ ବାନ୍ଧିରଖେ । ୭ ।

ହେ ଭାରତ, ତମୋଗୁଣ ଅଜ୍ଞାନରୁ ଜାତ । ତାହା ପ୍ରାଣୀମାନଙ୍କୁ ମୋହରେ ପକାଏ, ଏବଂ ମନୁଷ୍ୟକୁ ଅସାବଧାନତା, ଆଳସ୍ୟ ଓ ନିଦ୍ରାରେ ଆସକ୍ତ କରାଏ । ୮ ।

ହେ ଭାରତ, ସତ୍ତ୍ୱ ଆତ୍ମାକୁ ଶାନ୍ତ ସୁଖରେ ଆସକ୍ତ କରାଏ; ରଜୋଗୁଣ କର୍ମରେ ଏବଂ ତମୋଗୁଣ ଜ୍ଞାନକୁ ଆବୃତ କରି ପ୍ରମାଦରେ ଆସକ୍ତ କରାଏ । ୯ ।

ହେ ଭାରତ, ରଜ ଓ ତମ ଗୁଣ ଦବିଗଲାବେଳେ ସତ୍ତ୍ୱ ଗୁଣ, ସତ୍ତ୍ୱ ଓ ତମ ଗୁଣ ଦବିଲେ ରଜୋଗୁଣ ଏବଂ ସତ୍ତ୍ୱ ଓ ରଜ ଦବିଲେ ତମ ଗୁଣର ଆଧିକ୍ୟ ହୁଏ । ୧୦ ।

ଇନ୍ଦ୍ରିୟମାନଙ୍କଦ୍ୱାରା ଏ ଦେହରେ ଯେତେବେଳେ ନିର୍ମଳ ଭାବ ଓ ଜ୍ଞାନର ପ୍ରକାଶ ହୁଏ, ସେତେବେଳେ ସତ୍ତ୍ୱଗୁଣ ବୃଦ୍ଧି ପାଇଅଛି ବୋଲି ଜାଣିବ । ୧୧ ।

ହେ ଭରତର୍ଷଭ, ରଜୋଗୁଣ ବୃଦ୍ଧି ପାଇଲେ ଲୋଭ, କର୍ମପ୍ରବୃତ୍ତି, କର୍ମାରମ୍ଭ, ଅଶାନ୍ତି ଓ ଇଚ୍ଛା ଉଦିତ ହୁଏ । ୧୨ ।

ହେ କୁରୁନନ୍ଦନ, ତମୋଗୁଣ ବୃଦ୍ଧି ପାଇଲେ ଅଜ୍ଞାନ, କର୍ମ କରିବାକୁ ଅନିଚ୍ଛା, ଅସାବଧାନତା ଏବଂ ମୋହ ଇତ୍ୟାଦି ଉତ୍ପନ୍ନ ହୁଏ । ୧୩ ।

ନିଜ ଭିତରେ ସତ୍ତ୍ୱଗୁଣ ବୃଦ୍ଧି ପାଇଥିବା ସମୟରେ ଯାହାଙ୍କର ମୃତ୍ୟୁ ହୁଏ ସେ ଉତ୍ତମ ଜ୍ଞାନୀମାନଙ୍କର ନିର୍ମଳଲୋକକୁ ପ୍ରାପ୍ତ ହୁଅନ୍ତି । ୧୪ ।

ରଜୋଗୁଣରେ ମୃତ୍ୟୁ ହେଲେ ଦେହଧାରୀ କର୍ମସଙ୍ଗୀର ଲୋକରେ ଜନ୍ମ ହୁଏ, ଏବଂ ତମୋଗୁଣରେ ମୃତ୍ୟୁ ଘଟିଲେ ମୂଢ଼ ଯୋନିରେ ଜନ୍ମ ମିଳେ । ୧୫ ।

ଟିପ୍ପଣୀ—କର୍ମସଙ୍ଗୀ ଅର୍ଥାତ୍ ମନୁଷ୍ୟଲୋକ, ମୂଢ଼ଯୋନି ଅର୍ଥାତ୍ ପଶୁ ଇତ୍ୟାଦି ଲୋକ ।

ସତ୍‌କର୍ମର ଫଳ ସାତ୍ତ୍ୱିକ ଓ ନିର୍ମଳ, ରାଜସିକ କର୍ମର ଫଳ ଦୁଃଖମୟ ଏବଂ ତାମସ କର୍ମର ଫଳ ଅଜ୍ଞାନ ଅଟେ । ୧୬ ।

ଟିପ୍ପଣୀ—ସୁଖ ଦୁଃଖ କହିଲେ ଆମ୍ଭେମାନେ ଯେପରି ବୁଝୁଁ, ସେପରି ସୁଖ ଦୁଃଖର ଉଲ୍ଲେଖ ଏଠାରେ ହୋଇନାହିଁ । ସୁଖ କହିଲେ ଆତ୍ମାନନ୍ଦ, ଆତ୍ମପ୍ରକାଶ;ଏହାର ବିପରୀତ ହେଉଛି ଦୁଃଖ । ୧୭ ଶ୍ଳୋକରେ ଏହା ସ୍ପଷ୍ଟ ବୁଝା ଯାଉଅଛି ।

ସତ୍ତ୍ୱଗୁଣରୁ ଜ୍ଞାନ ଉତ୍ପନ୍ନ ହୁଏ । ରଜୋଗୁଣରୁ ଲୋଭ, ଏବଂ ତମୋଗୁଣରୁ ଅସାବଧାନତା, ମୋହ ଓ ଅଜ୍ଞତା ଉତ୍ପନ୍ନ ହୁଏ । ୧୭ ।

ସାତ୍ତ୍ୱିକ ଲୋକେ ଉପରକୁ ଉଠନ୍ତି, ରାଜସିକ ଲୋକେ ମଧ୍ୟରେ ରହନ୍ତି ଏବଂ ଅବଶିଷ୍ଟ ଗୁଣ ତଥା ତାମସିକ ଲୋକର ଅଧୋଗତି ହୁଏ । ୧୮ ।

ଜ୍ଞାନୀ ଯେତେବେଳେ ଗୁଣ ଛଡ଼ା ଅନ୍ୟ କେହି କର୍ତ୍ତା ନାହିଁ ଏହା ବୁଝନ୍ତି ଏବଂ ଯେ ଗୁଣ ଅତୀତ ତାହାଙ୍କୁ ଜାଣନ୍ତି, ସେତେବେଳେ ସେ ମୋର ଭାବକୁ ପ୍ରାପ୍ତ ହୁଅନ୍ତି । ୧୯ ।

ଟିପ୍ପଣୀ—ଗୁଣକୁ ଯେ କର୍ତ୍ତାରୂପେ ଦେଖନ୍ତି ତାଙ୍କର ଅହଂଭାବ ହୋଇ ପାରେ ନାହିଁ । ତେଣୁ ତାଙ୍କର ସବୁ କାମ ସ୍ୱାଭାବିକ ଏବଂ କେବଳ ଶରୀର ନିର୍ବାହ ପାଇଁ ହୋଇଥାଏ । ଶରୀରନିର୍ବାହ ପୁଣି ପରମାର୍ଥ ନିମିତ୍ତ ହେଉଥିବାରୁ ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ସର୍ବଦା ତ୍ୟାଗ ଓ ବୈରାଗ୍ୟ ଭାବ ରହିବା ଉଚିତ । ଏପରି ଜ୍ଞାନୀ ଗୁଣାତୀତ ନିର୍ଗୁଣ ଈଶ୍ୱରଙ୍କୁ ସ୍ୱତଃ ଚିନ୍ତା କରେ ଓ ଭଜନ କରେ ।

ଦେହର ସଂଯୋଗରୁ ଉତ୍ପନ୍ନ ଏହି ତିନିଗୁଣକୁ ଅତିକ୍ରମ କରି ଦେହଧାରୀ ଜନ୍ମ, ମୃତ୍ୟୁ ଓ ବାର୍ଦ୍ଧକ୍ୟ ଦୁଃଖରୁ ରକ୍ଷା ପାଇ ମୋକ୍ଷ ଲାଭକରେ । ୨୦ ।

ଅର୍ଜ୍ଜୁନ କହିଲେ—ହେ ପ୍ରଭୋ, ଏହି ଗୁଣକୁ ଯେଉଁମାନେ ଅତିକ୍ରମ କରି ପାରିଛନ୍ତି ସେମାନଙ୍କର ଲକ୍ଷଣ କ'ଣ ? ସେମାନଙ୍କର ଆଚାର ବ୍ୟବହାର କିପରି ? ସେମାନେ ଏହି ଗୁଣକୁ କି ପ୍ରକାରେ ଅତିକ୍ରମ କରିଯାନ୍ତି । ୨୧ ।

ଶ୍ରୀ ଭଗବାନ୍ କହିଲେ—ହେ ପାଣ୍ଡବ, ପ୍ରକାଶ, ପ୍ରବୃତ୍ତି ଓ ମୋହ ପାଇଲେ ମଧ୍ୟ ଯେ ଦୁଃଖିତ ହୁଅନ୍ତି ନାହିଁ କିମ୍ବା ସେ ସବୁ ନ ପାଇଲେ ମଧ୍ୟ ପାଇବାକୁ ଯେ ଇଚ୍ଛା କରନ୍ତି ନାହିଁ, ଯେ ଉଦାସୀନ ପରି ସ୍ଥିର, ଯାହାଙ୍କୁ ଗୁଣ ବିଚଳିତ କରି ନ ପାରେ, ଗୁଣ କେବଳ ନିଜର କାମ ନିଜେ କରୁଅଛି ବୋଲି ଜାଣି ଯେ ସ୍ଥିର ରହନ୍ତି ଏବଂ ବିଚଳିତ ହୁଅନ୍ତି ନାହିଁ, ସୁଖ ଦୁଃଖରେ ଯେ ସମଭାବାପନ୍ନ, ଯେ ସ୍ୱସ୍ଥ ଅର୍ଥାତ୍ ନିଜକୁ ନିଜ ଭିତରେ ସ୍ଥିର ରଖନ୍ତି, ମାଟି, ପଥର, ସୁନାକୁ ଯେ ଏକ ଦୃଷ୍ଟିରେ ଦେଖନ୍ତି, ପ୍ରିୟ ବା ଅପ୍ରିୟ ବସ୍ତୁ ପ୍ରାପ୍ତି ଯାହାଙ୍କ ନିକଟରେ ସମାନ, ଯେ ନିଜର ନିନ୍ଦା ଓ ସ୍ତୁତିକୁ ସମାନ ମନେ କରନ୍ତି, ଏପରି ବୁଦ୍ଧିମାନ ବ୍ୟକ୍ତି; ମାନାପମାନ ଯାହାଙ୍କ ନିକଟରେ ସମାନ,

ଯେ ମିତ୍ର ଓ ଶତ୍ରୁ ପ୍ରତି ସମତ୍ତ୍ୱ ପୋଷଣ କରନ୍ତି ଏବଂ ଯେ ସର୍ବ ପ୍ରକାର ଆରମ୍ଭକୁ ତ୍ୟାଗ କରିଛନ୍ତି ତାହାଙ୍କୁ ଗୁଣାତୀତ କୁହାଯାଏ । ୨୨, ୨୫ ।

ଟିପ୍ପଣୀ—ବାଇଶରୁ ପଚିଶ ପର୍ଯ୍ୟନ୍ତ ସବୁ ଶ୍ଳୋକ ଏକତ୍ର ବିଚାର ଯୋଗ୍ୟ ଅଟେ । ପ୍ରଥ ଶ୍ଳୋକର କଥନାନୁସାରେ ପ୍ରକାଶ, ପ୍ରବୃତ୍ତି ଓ ମୋହ, ସତ୍ତ୍ୱ, ରଜ ଓ ତମର କ୍ରମପରିମାଣ ଅଥବା ଚିହ୍ନ ଅଟେ । ଅର୍ଥାତ୍ ଗୁଣସମୂହକୁ ଅତିକ୍ରମ କରି ଯାଇଥିବା ବ୍ୟକ୍ତିଙ୍କ ଉପରେ ସେହି ପରିଣାମର କୌଣସି ପ୍ରଭାବ ପଡ଼େ ନାହିଁ ବୋଲି କହିବା ଏଠାରେ ଏକମାତ୍ର ଉଦ୍ଦେଶ୍ୟ । ପଥର ପ୍ରକାଶିତ ହେବାର ଆବଶ୍ୟକତା ବୋଧ କରେନାହିଁ, ପ୍ରବୃତ୍ତି କିମ୍ବା ଜଡ଼ତାର ଦ୍ୱେଷ କରେନାହିଁ, ନ ମୁହିଁ ସେ ଶାନ୍ତି ପାଇଅଛି । କେହି ତାକୁ ହଲେଇ ଦେଲେ ସେଥିପାଇଁ ସେ ତାର ଦ୍ୱେଷ କରେନାହିଁ, ବରଂ ଏପରି ଭାବରେ ପାଇବା ଗତିକୁ ସ୍ଥିରକରି ରଖିଦିଏ, ଏହି କାରଣରୁ ତାହାର ପ୍ରବୃତ୍ତି ଅର୍ଥାତ୍ ଗତି ବନ୍ଧ ହୋଇଗଲା ଏବଂ ସେ ମୋହ ଓ ଜଡ଼ତା ପାଇଲା, ଏପରି ବିଚାରି ସେ ଦୁଃଖିତ ହୁଏ ନାହିଁ, ବରଂ ଏହି ତିନପ୍ରକାର ଅବସ୍ଥାରେ ସେ ସମାନଭାବରେ ଥାଏ । ପଥର ଓ ଗୁଣାତୀତ ମଧ୍ୟରେ ପ୍ରଭେଦ ଏହି ଯେ ଗୁଣାତୀତର ଚେତନା ଅଛି ପଥରର ଚେତନା ନାହିଁ । ଗୁଣାତୀତ ବ୍ୟକ୍ତି ଜ୍ଞାନପୂର୍ବକ ଗୁଣମାନଙ୍କର ପରିଣାମ ଓ ସ୍ପର୍ଶକୁ ତ୍ୟାଗକରି ପଥର ପରି ଜଡ଼ ପାଲଟିଯାନ୍ତି । ପଥର ଗୁଣମାନଙ୍କର ତଥା ପ୍ରକୃତିର କାର୍ଯ୍ୟର ସାକ୍ଷୀ, ମାତ୍ର କର୍ତ୍ତା ନୁହେଁ । ଜ୍ଞାନୀ ସେହିପରି ତାହାର (ପ୍ରକୃତିର କାର୍ଯ୍ୟର) କେବଳ ସାକ୍ଷୀ ଅଟନ୍ତି; ମାତ୍ର କର୍ତ୍ତା ନୁହନ୍ତି । ଏପରି ଜ୍ଞାନୀଙ୍କ ସମ୍ବନ୍ଧରେ ଏହା କଳ୍ପନା କରାଯାଇ ପାରେ ଯେ ୨୩ ଶ୍ଳୋକର କଥନାନୁସାରେ "ଗୁଣ ନିଜର କାମକରି ଯାଉଅଛି" ବୋଲି ବିଶ୍ୱାସ କରି ସେ ବିଚଳିତ ନ ହୋଇ ସ୍ଥିର ରହନ୍ତି, ଉଦାସୀନ ପରି ରହନ୍ତି, ତଥା ଅଟଳ ରହନ୍ତି । ଆମ୍ଭେମାନେ ଗୁଣମାନଙ୍କରେ

ତନ୍ମୟ । ତେଣୁ ଧୈର୍ଯ୍ୟପୂର୍ବକ କଳ୍ପନା କଲେ କେବଳ ଏ ସ୍ଥିତିକୁ ବୁଝିପାରିବା, ମାତ୍ର ତାହାକୁ ଅନୁଭବ କରିପାରିବା ନାହିଁ । କିନ୍ତୁ ସେହି କଳ୍ପନାକୁ ଦୃଷ୍ଟି ଅଗ୍ରରେ ରଖି ଅହଂଭାବକୁ ଦିନକୁ ଦିନ ଛାଡ଼ିବାକୁ ଅଭ୍ୟାସ କଲେ, ଶେଷରେ ଗୁଣାତୀତ ଅବସ୍ଥାର ନିକଟରେ ପହଞ୍ଚି ତାହାର ସାକ୍ଷାତ୍କାର କରିପାରିବା । ଗୁଣାତୀତବ୍ୟକ୍ତି ଆପଣାର ସ୍ଥିତିକୁ ଅନୁଭବ କରିପାରେ, ମାତ୍ର ତାହାର ବର୍ଣ୍ଣନା କରିପାରେ ନାହିଁ । ଯେ ବର୍ଣ୍ଣନା କରିପାରେ ସେ ଗୁଣାତୀତ ନୁହେଁ । କାରଣ ତାହାହେଲେ ତାହାଙ୍କଠାରେ ଅହଂଭାବ ଅଛି ବୋଲି ବୁଝିବାକୁ ହେବ । ଯେଉଁ ଶାନ୍ତ ସମସ୍ତେ ସହଜରେ ଅନୁଭବ କରିପାରନ୍ତି ତାହା ପ୍ରକାଶ, ପ୍ରବୃତ୍ତି, ଜଡ଼ତା ବା ମୋହ । ଗୀତାର ଅନେକ ସ୍ଥଳରେ ସ୍ପଷ୍ଟ କୁହା ଯାଇଅଛି ଯେ ସାତ୍ତ୍ୱିକଭାବ ଗୁଣାତୀତର ନିକଟରୁ ନିକଟତମ ଅବସ୍ଥା ଅଟେ । ସୁତରାଂ ସତ୍ତ୍ୱଗୁଣକୁ ବିକାଶ କରିବାପାଇଁ ପ୍ରତ୍ୟେକ ମନୁଷ୍ୟ ଯତ୍ନବାନ୍ ହେଉ ଏବଂ ଗୁଣାତୀତ ସ୍ଥିତି ନିଶ୍ଚୟହିଁ ପ୍ରାପ୍ତ ହେବ ଏପରି ବିଶ୍ୱାସ ରଖୁ ।

ଯେଉଁ ବ୍ୟକ୍ତି ଏକନିଷ୍ଠ ଭକ୍ତିଯୋଗ ଦ୍ୱାରା ମୋର ସେବା କରେ ସେ ଏହି ତିନିଗୁଣକୁ ଅତିକ୍ରମକରି ବ୍ରହ୍ମଭୂତ ହେବାପାଇଁ ସମର୍ଥ ହୁଏ । ୨୬ ।

କାରଣ ମୁଁ ବ୍ରହ୍ମଭୂତସ୍ଥିତି ଅଟେ । ମୁଁ ଶାଶ୍ୱତ ମୋକ୍ଷର ସ୍ଥିତି ଅଟେ । ସେହିପରି ସନାତନ ଧର୍ମ ଏବଂ ପରମ ସୁଖର ସ୍ଥିତି ମଧ୍ୟ ମୁଁ ଅଟେ । ୨୭ ।

ଓଁ ତତ୍ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପକ ଉପନିଷଦ୍ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦର ଗୁଣତ୍ରୟ ବିଭାଗ ଯୋଗ ନାମକ ଚତୁର୍ଦ୍ଦଶ ଅଧ୍ୟାୟର ସମାପ୍ତି ।

———o———

( ୧୫ )

## ପୁରୁଷୋତ୍ତମ ଯୋଗ

ଏହି ଅଧ୍ୟାୟରେ କ୍ଷର ଓ ଅକ୍ଷରର ଅତୀତ; ଏପରି ଆପଣାର ଉତ୍ତମ ସ୍ୱରୂପକୁ ଭଗବାନ୍ ବୁଝାଇ ଅଛନ୍ତି ।

ଶ୍ରୀଭଗବାନ୍ କହିଲେ—ଯାହାର ମୂଳ ଉପରେ, ଶାଖା ତଳେ, ଏବଂ ବେଦ ଯାହାର ପତ୍ର ଏପରି ଅବିନାଶୀ ଅଶ୍ୱତ୍ଥ ବୃକ୍ଷକୁ ପଣ୍ଡିତମାନେ ବର୍ଣ୍ଣନା କରିଅଛନ୍ତି । ଏହାକୁ ଯେ ଜାଣି ଅଛନ୍ତି ସେ ବେଦଜ୍ଞ, ଜ୍ଞାନୀ ଅଟନ୍ତି । ୧ ।

ଟିପ୍ପଣୀ—'ଶ୍ୱ' କହିଲେ ଆସନ୍ତା କାଲିକୁ ବୁଝାଏ, ସୁତରାଂ ଅଶ୍ୱତ୍ଥ କହିଲେ ଆସନ୍ତା କାଲି ପର୍ଯ୍ୟନ୍ତ ରହି ନ ପାରିବାର କ୍ଷଣିକ ସଂସାର । ସଂସାରର ପ୍ରତିକ୍ଷଣରେ ରୂପାନ୍ତର ଘଟୁଅଛି । ସେହି ହେତୁ ତାହା ଅଶ୍ୱତ୍ଥ ଅଟେ । କିନ୍ତୁ ଏହିପରି ଅବସ୍ଥାରେ ସେ ସବୁବେଳେ ରହିବ । ତେଣୁ ତାହାର ମୂଳ ଊର୍ଦ୍ଧ୍ୱ ଅର୍ଥାତ୍ ଈଶ୍ୱର, ସୁତରାଂ ତାହା ଅବିନାଶୀ । ତହିଁରେ ଯଦି ବେଦ ଅର୍ଥାତ୍ ଧର୍ମର ପବିତ୍ର ଜ୍ଞାନରୂପକ ପତ୍ର ନ ରହିବ ତେବେ ତାହା ଶୋଭା ପାଇବ ନାହିଁ । ଏଭଳି ସଂସାରର ଯଥାର୍ଥ ଜ୍ଞାନ ଯାହାର ହୋଇଅଛି, ଯେ ଧର୍ମକୁ ଜାଣିଅଛନ୍ତି ସେ ଜ୍ଞାନୀ ଅଟନ୍ତି ।

ସେହି ଅଶ୍ୱତ୍ଥ ବୃକ୍ଷର ଶାଖା ସବୁ ଗୁଣତ୍ରୟ ଦ୍ୱାରା ବୃଦ୍ଧି ପାଇ ଏବଂ ତହିଁରେ ବିଷୟରୂପକ କୋମଳ ପତ୍ର ଅଙ୍କୁରିତ ହୋଇ ତଳ ଉପରକୁ ପ୍ରସାରିତ ହୋଇଅଛି । କର୍ମବନ୍ଧନର କାରଣ ସ୍ୱରୂପ ତାହାର ମୂଳ ମନୁଷ୍ୟ ଲୋକରେ ତଳକୁ ବିସ୍ତୃତ ହୋଇଅଛି । ୨ ।

ଟିପ୍ପଣୀ—ସଂସାର ବୃକ୍ଷକୁ ଜାଣି ନ ଥିବା ଲୋକଙ୍କର ଦୃଷ୍ଟିକୁ ବର୍ଣ୍ଣନା କରାଯାଇଅଛି । ତହିଁର ଊର୍ଦ୍ଧ୍ୱରେ ଈଶ୍ୱରଙ୍କଠାରେ ରହିଥିବା

ମୂଳକୁ ସେ ଦେଖେ ନାହିଁ, କିନ୍ତୁ ବିଷୟମାନଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଗୁଣ ବିଷୟର ସାହାଯ୍ୟରେ ଏହି ବୃକ୍ଷକୁ ପୋଷଣ କରେ ଏବଂ ଇହଲୋକରେ କର୍ମବନ୍ଧନରେ ବନ୍ଧା ହୋଇ ପଡ଼ିଥାଏ ।

ଏହାର ଯଥାର୍ଥ ସ୍ୱରୂପ ଦେଖିବାକୁ ମିଳେ ନାହିଁ । ତାହାର ଆଦି ଅନ୍ତ ନାହିଁ କିମ୍ବା ମୂଳ ମଧ୍ୟ ନାହିଁ । ଏହାର ମୂଳ ଅତି ଗଭୀରକୁ ପ୍ରବେଶ କରିଥିବା ହେତୁ ଅସଙ୍ଗରୂପକ ବଳବାନ୍ ଶସ୍ତ୍ର ଦ୍ୱାରା ଏହି ଅଶ୍ୱତ୍ଥ ବୃକ୍ଷକୁ ଛେଦନ କରି ମନୁଷ୍ୟର ଏପରି ପ୍ରାର୍ଥନା କରିବା ଉଚିତ— "ଯାହାଙ୍କଠାରୁ ସନାତନ ପ୍ରବୃତ୍ତି ଅର୍ଥାତ୍ ମାୟା ପ୍ରସୂତ ହୋଇଅଛି ସେହି ଆଦି ପୁରୁଷଙ୍କର ମୁଁ ଆଶ୍ରୟ ନେଉଅଛି;" ଏବଂ ଯେଉଁ ପଦକୁ ପାଇଲେ ଆଉ ଜନ୍ମମରଣ ଚକ୍ରରେ ପଡ଼ିବାକୁ ହୁଏନାହିଁ ସେହି ପଦର ଅନୁସନ୍ଧାନ କରିବା ଦରକାର । ୩, ୪ ।

ଟିପ୍ପଣୀ— ଅସଙ୍ଗ କହିଲେ ଅସହଯୋଗ ଓ ବୈରାଗ୍ୟକୁ ବୁଝାଏ । ଯେ ପର୍ଯ୍ୟନ୍ତ ମନୁଷ୍ୟ ବିଷୟ-ବାସନା ସହିତ ଅସହଯୋଗ କରି ସେମାନଙ୍କର ପ୍ରଲୋଭନରୁ ଦୂରରେ ନ ରହେ, ସେ ପର୍ଯ୍ୟନ୍ତ ସେ ତହିଁରେ ପଡ଼ିବାକୁ ବାଧ୍ୟ ହୁଏ । ବିଷୟ-ବାସନା ସହିତ ଖେଳ ଖେଳି ତଦ୍ୱାରା ଆକୃଷ୍ଟ ନ ହୋଇ ରହିବା ଅସମ୍ଭବ ଏହା ଏହି ଶ୍ଳୋକର ମର୍ମ ଅଟେ ।

ଯେ ମାନ-ମୋହକୁ ଛାଡ଼ି ଅଛନ୍ତି, ଯେ ଆସକ୍ତିରୁ ଉତ୍ପନ୍ନ ଦୋଷକୁ ଦୂର କରିଛନ୍ତି, ଯେ ଅତ୍ମାରେ ନିତ୍ୟ ନିମଗ୍ନ ଥାନ୍ତି, ଯାହାଙ୍କର ବିଷୟ ବାସନା ଶାନ୍ତ ହୋଇଅଛି, ଯେ ସୁଖ ଦୁଃଖ ରୂପକ ଦ୍ୱନ୍ଦ୍ୱରୁ ମୁକ୍ତ, ସେହି ଜ୍ଞାନୀ ପୁରୁଷ ଅବିନାଶୀ ପଦକୁ ପାନ୍ତି । ୫ ।

ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି କେହି ସେହି ଧାମକୁ ଆଲୋକିତ କରି ପାରନ୍ତି ନାହିଁ । ଯେଉଁଠାକୁ ଗଲେ ଆଉ ଫେରି ଜନ୍ମ ହେବାକୁ ହୁଏ ନାହିଁ ତାହାହିଁ ମୋର ପରମଧାମ । ୬ ।

ମୋର ସନାତନ ଅଂଶ ଜୀବଲୋକରେ ଜୀବ ହୋଇ ପ୍ରକୃତିସ୍ଥ ପାଞ୍ଚ ଇନ୍ଦ୍ରିୟ ଓ ମନକୁ ଆକର୍ଷଣ କରେ । ୭ ।

(ଜୀବ ହୋଇଥିବା ମୋର ଏହି ଅଂଶ ରୂପକ) ଈଶ୍ୱର ଯେତେବେଳେ ଶରୀରକୁ ଧାରଣ କରନ୍ତି ଅଥବା ତ୍ୟାଗ କରନ୍ତି, ସେତେବେଳେ ବାୟୁ ତାହାର ଗୃହପାଖରୁ ଗନ୍ଧ ହରଣ କରି ନେଲାପରି ସେ ମନ ଓ ଇନ୍ଦ୍ରିୟକୁ ନେଇ ଚାଲିଯାନ୍ତି । ୮ ।

ସେ (ଏହି ଜୀବରୂପୀ ଈଶ୍ୱର) କାନ, ଆଖି, ଚର୍ମ, ଜିଭ, ନାକ ଓ ମନ ପ୍ରଭୃତିର ଆଶ୍ରୟ ନେଇ ବିଷୟ ଉପଭୋଗ କରନ୍ତି । ୯ ।

ଟିପ୍ପଣୀ— ଏଠାରେ ବିଷୟ ଶବ୍ଦର ଅର୍ଥ ବୀଭତ୍ସ ବିଳାସ ନୁହେଁ, ଅଧିକନ୍ତୁ ତାହା ଇନ୍ଦ୍ରିୟମାନଙ୍କର ସ୍ୱାଭାବିକ କ୍ରିୟା । ଯଥା—ଆଖିର କାର୍ଯ୍ୟ ଦେଖିବା, କାନର କାର୍ଯ୍ୟ ଶୁଣିବା, ଜିଭର କାର୍ଯ୍ୟ ଆସ୍ୱାଦନ କରିବା; ଏହି କ୍ରିୟାମାନ ବିକାରଯୁକ୍ତ ଅଥବା ଅହଂତ୍ୱପୂର୍ଣ୍ଣ ହେଲେ, ସେ ସବୁ ଦୂଷିତ ତଥା ବୀଭତ୍ସ ହୁଏ, ଏବଂ ନିର୍ବିକାର ହେଲେ ନିର୍ଦ୍ଦୋଷ ହୁଏ । ଆଖିରେ ଦେଖିବାରେ ଏବଂ ହାତରେ ଛୁଇଁବାରେ ଯେଉଁ ବିକାର ହୁଏ ବାଳକ ତହିଁରେ ଦୋଷୀ ହୁଏ ନାହିଁ । ତେଣୁ ତଳ ଶ୍ଳୋକରେ କୁହା ଯାଇଅଛି ।

ଯେ ଶରୀରକୁ ତ୍ୟାଗ କରନ୍ତି ଏବଂ ଯେ ଶରୀର ମଧ୍ୟରେ ଅବସ୍ଥିତ ରହି ଗୁଣମାନଙ୍କର ଆଶ୍ରୟରେ ବିଷୟଭୋଗକୁ ଉପଭୋଗ କରନ୍ତି ତାହାଙ୍କୁ (ସେହି ଅଂଶ ରୂପକ ଈଶ୍ୱରଙ୍କୁ) ମୂର୍ଖବ୍ୟକ୍ତି ଦେଖିପାରେ ନାହିଁ; ମାତ୍ର ଦିବ୍ୟଚକ୍ଷୁ ଲାଭ କରିଥିବା ଜ୍ଞାନୀ ତାହାଙ୍କୁ ଦେଖି ପାରନ୍ତି । ୧୦ ।

ଯତ୍ନଶୀଳ ଯୋଗୀମାନେ ଆତ୍ମାରେ ଅବସ୍ଥିତ ପରମାତ୍ମାଙ୍କୁ ଦେଖି ପାରନ୍ତି । କିନ୍ତୁ ଯେଉଁମାନଙ୍କର ଆତ୍ମଶୁଦ୍ଧି ହୋଇନାହିଁ ସେହି ମୂର୍ଖମାନେ ଯତ୍ନ କଲେ ମଧ୍ୟ ତାହାଙ୍କୁ ଦେଖିପାରନ୍ତି ନାହିଁ । ୧୧ ।

ଟିପ୍ପଣୀ—ଏଥିରେ ଏବଂ ନବମ ଅଧ୍ୟାୟରେ ପୁନର୍ଜନ୍ମ ବିଷୟ ନେଇ ଭଗବାନ ଯାହା କହିଛନ୍ତି ତହିଁରେ କିଛି ପ୍ରଭେଦ ନାହିଁ । ଅକୃତାତ୍ମା କହିଲେ ଭକ୍ତିହୀନ, ସ୍ୱେଚ୍ଛାଚାରୀ ଓ ଦୁରାଚାରୀକୁ ବୁଝାଏ । ଯେ ନମ୍ରଭାବରେ ଶ୍ରଦ୍ଧାପୂର୍ବକ ଈଶ୍ୱରଙ୍କର ଭଜନ କରେ ତାହାର ଆତ୍ମଶୁଦ୍ଧି ହୁଏ ଏବଂ ସେ ମଧ୍ୟ ଈଶ୍ୱରଙ୍କୁ ଜାଣିପାରେ । ଯେଉଁ ବ୍ୟକ୍ତି ଯମ ନିୟମାଦିର କୌଣସି ଆବଶ୍ୟକତା ନାହିଁ ବୋଲି ମନେକରି କେବଳ ବୁଦ୍ଧିବଳରେ ଈଶ୍ୱରଙ୍କୁ ଦେଖିବାକୁ ଇଚ୍ଛାକରେ ସେ ଅଚେତ (ଚିତ୍ତଶୂନ୍ୟ) ତଥା ଶ୍ରମଶୂନ୍ୟ ବ୍ୟକ୍ତି, ଶ୍ରମକୁ କଦାପି ପାଇ ନ ପାରେ ।

ଯେଉଁ ତେଜ ସୂର୍ଯ୍ୟ ଭିତରେ ଅବସ୍ଥାନ କରି ଏହି ନିଖିଳ ଜଗତକୁ ଆଲୋକିତ କରୁଅଛି, ଏବଂ ଯେଉଁ ତେଜ ଚନ୍ଦ୍ର ଓ ଅଗ୍ନି ମଧ୍ୟରେ ରହିଅଛି, ତାହା ମୋର ବୋଲି ଜାଣିବ । ୧୨ ।

ପୃଥିବୀ ମଧ୍ୟରେ ପ୍ରବେଶ କରି ମୁଁ ନିଜ ବଳରେ ପ୍ରାଣୀମାନଙ୍କୁ ଧାରଣ କରିଅଛି ଏବଂ ରସୋତ୍ପନ୍ନକାରୀ ଚନ୍ଦ୍ର ହୋଇ ସବୁ ପ୍ରକାର ଔଷଧିକୁ ପୁଷ୍ଟ କରୁଅଛି । ୧୩ ।

ପ୍ରାଣୀମାନଙ୍କ ଦେହର ଆଶ୍ରୟ ନେଇ ଜଠରାଗ୍ନି ରୂପରେ ପ୍ରାଣ ଓ ଅପାନ ବାୟୁଦ୍ୱାରା ମୁଁ ଚତୁର୍ବିଧ ଅନ୍ନକୁ ପରିପାକ କରେ ।୧୪।

ମୁଁ ପ୍ରାଣୀମାନଙ୍କର ହୃଦୟରେ ବିଦ୍ୟମାନ ଅଛି । ମୋ'ଠାରୁ ସ୍ମୃତି, ଜ୍ଞାନ ଓ ତହିଁର ଅଭାବ ମଧ୍ୟ ଜାତ ହୁଏ । ସମସ୍ତ ବେଦର ଜ୍ଞାତବ୍ୟ ବିଷୟ ମୁଁ, ବେଦଜ୍ଞ ମୁଁ ଏବଂ ବେଦ ପ୍ରକାଶକାରୀ ମଧ୍ୟ ମୁଁ ଅଟେ ।୧୫।

ଏ ସଂସାରରେ କ୍ଷର ଓ ଅକ୍ଷର ନାମରେ ଦୁଇଟି ପୁରୁଷ ପ୍ରସିଦ୍ଧ । ତନ୍ମଧ୍ୟରେ କ୍ଷର ନାଶବାନ୍ ଏବଂ ଅକ୍ଷର ଅବିନାଶୀ ଅଟେ । ପ୍ରାଣୀମାନଙ୍କୁ କ୍ଷର ବୋଲି ଜାଣିବ । ପ୍ରାଣୀମାନଙ୍କ ଭିତରେ ଅନ୍ତର୍ଯ୍ୟାମୀରୂପେ ଯେ ଅବସ୍ଥିତ ସେ ଅକ୍ଷର ଅଟନ୍ତି । ୧୬ ।

ଏହି ପୁରୁଷଙ୍କୁ ଛାଡ଼ି ଅନ୍ୟ ଏକ ଉତ୍ତମ ପୁରୁଷ ଅଛନ୍ତି, ସେ ପରମାତ୍ମା । ଏହି ଅବ୍ୟୟ ଈଶ୍ୱର ତ୍ରିଲୋକରେ ପ୍ରବେଶ କରି ତାଙ୍କୁ [ତ୍ରିଲୋକକୁ] ପୋଷଣ କରୁଅଛନ୍ତି । ୧୭ ।

ଯେଉଁ କାରଣରୁ ମୁଁ କ୍ଷରର ଅତୀତ, ଏବଂ ଅକ୍ଷରଠାରୁ ମଧ୍ୟ ଉତ୍ତମ, ସେହି କାରଣରୁ ବେଦରେ ଏବଂ ଲୋକମାନଙ୍କ ମଧ୍ୟରେ ମୁଁ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ । ୧୮ ।

ହେ ଭାରତ, ଯେ ମୋହକୁ ଛାଡ଼ିଅଛି ଏବଂ ମୋତେ ପୁରୁଷୋତ୍ତମ ରୂପେ ଜାଣିଅଛି ସେ ସବୁ ଜାଣିଅଛି । ସେ ପୂର୍ଣ୍ଣ ଭାବରେ ମୋତେ ଭଜନ କରିଅଛି । ୧୯ ।

ହେ ଅନଘ, ଯାହା ଅତି ଗୋପନୀୟ ଶାସ୍ତ୍ର ତାହା ମୁଁ ତୁମ୍ଭଙ୍କୁ କହିଲି । ହେ ଭାରତ, ଏହାକୁ ଜାଣିଲେ ମନୁଷ୍ୟର ବୁଦ୍ଧି ବିକାଶ ପାଇବ ଏବଂ ତାହାର ଜୀବନ ସଫଳ ହେବ । ୨୦ ।

ଓଁ ତତ୍‌ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାରୂପକ ଉପନିଷଦ୍ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦର ପୁରୁଷୋତ୍ତମ ଯୋଗ ନାମକ ପଞ୍ଚଦଶ ଅଧ୍ୟାୟର ସମାପ୍ତି ।

---

## ( ୧୬ )

## ଦୈବାସୁର ସମ୍ପଦ୍ ବିଭାଗ ଯୋଗ

ଏହି ଅଧ୍ୟାୟରେ ଦୈବୀ ଓ ଆସୁରୀ ସଂପଦର ବର୍ଣ୍ଣନା କରାଯାଇ ଅଛି ।

ଶ୍ରୀଭଗବାନ୍ କହିଲେ:—ହେ ଭାରତ, ଅଭୟ, ଅନ୍ତଃକରଣର ପବିତ୍ରତା, ଜ୍ଞାନ, ଯୋଗରେ ନିଷ୍ଠା, ଦାନ, ଦମ, ଯଜ୍ଞ, ସ୍ୱାଧ୍ୟାୟ, ତପ,

ସରଳତା, ଅହିଂସା, ସତ୍ୟ, ଅକ୍ରୋଧ, ତ୍ୟାଗ, ଶାନ୍ତି, ଅପୈଶୁନ, ପ୍ରାଣୀମାନଙ୍କ ପ୍ରତି ଦୟା, ନିର୍ଲୋଭତା, ମୃଦୁତା, ମର୍ଯ୍ୟାଦା, ଅଚଞ୍ଚଳତା, ତେଜ, କ୍ଷମା, ଧୃତି, ଶୌଚ, ଅଦ୍ରୋହ, ନିରଭିମାନ ଇତ୍ୟାଦି ଗୁଣ ଦୈବୀ ସମ୍ପଦ ନେଇ ଜନ୍ମିଥିବା ଲୋକଙ୍କଠାରେ ଥାଏ । ୧, ୨, ୩ ।

ଟିପ୍ପଣୀ—ଦମ ଅର୍ଥାତ୍ ଇନ୍ଦ୍ରିୟ ନିଗ୍ରହ, ଅପୈଶୁନ ଅର୍ଥାତ୍ ପଛରେ କାହାର ନିନ୍ଦା ନ କରିବା, ନିର୍ଲୋଭତା ଅର୍ଥାତ୍ ଲାଳସା ନ ରଖିବା ତଥା ଲମ୍ପଟି ନ ହେବା, ତେଜ ଅର୍ଥାତ୍ ପ୍ରତ୍ୟେକ ପ୍ରକାର ନୀଚ ବୃତ୍ତିର ବିରୋଧ କରିବାର ଇଚ୍ଛା, ଅଦ୍ରୋହ ଅର୍ଥାତ୍ କାହାର ମନ୍ଦାଚରଣ ନ କରିବା ଓ ମନ୍ଦ ନ ପାଞ୍ଚିବା ।

ଦମ୍ଭ, ଦର୍ପ, ଅଭିମାନ, କ୍ରୋଧ, ପାରୁଷ୍ୟ, ଅଜ୍ଞାନ, ହେ ପାର୍ଥ, ଏହି ସବୁ ଗୁଣ ଆସୁରୀ ସମ୍ପଦ ନେଇ ଜନ୍ମିଥିବା ଲୋକର ଥାଏ । ୪ ।

ଟିପ୍ପଣୀ—ନିଜଭିତରେ ଯାହା ନାହିଁ ତାହା ଦେଖାଇ ହେବାକୁ ଦମ୍ଭ, ଛଳ ଓ ପାଷଣ୍ଡଭାବ; ଦର୍ପ ଅର୍ଥାତ୍ ବଡ଼ିମା ପଡ଼ିଆ, ପାରୁଷ୍ୟ ଅର୍ଥାତ୍ କଠୋରତା ।

ଦୈବୀ ସମ୍ପଦ ମୋକ୍ଷ ଦିଏ, ଏବଂ ଆସୁରୀ ସମ୍ପଦ ବନ୍ଧନରେ ପକାଏ । ହେ ପାଣ୍ଡବ, ତୁମ୍ଭେ ଶୋକ କରିବା ଉଚିତ ନହେଁ । କାରଣ ତୁମ୍ଭେ ଦୈବୀ ସମ୍ପଦ ନେଇ ଜନ୍ମିଅଛ । ୫ ।

ଏହି ଲୋକରେ ଦୈବୀ ଓ ଆସୁରୀ ନାମରେ ଦୁଇଟି ସୃଷ୍ଟି ଅଛି । ହେ ପାଣ୍ଡବ, ଦୈବୀ ସୃଷ୍ଟିର ବର୍ଣ୍ଣନା ବିସ୍ତାରପୂର୍ବକ କରାଗଲା । ବର୍ତ୍ତମାନ ଆସୁରୀ ସୃଷ୍ଟିର ବର୍ଣ୍ଣନା ଶୁଣ । ୬ ।

ପ୍ରବୃତ୍ତି କ'ଣ ଏବଂ ନିବୃତ୍ତି କ'ଣ ତାହା ଆସୁରୀ ବୃତ୍ତିର ଲୋକ ଜାଣେ ନାହିଁ । ତାହାଠାରେ ସେହିପରି ଶୌଚ, ଆଚାର, ସତ୍ୟ— ଏ ସବୁର ମଧ୍ୟ କିଛି ଚିହ୍ନ ନଥାଏ । ୭ ।

ସେମାନେ କହନ୍ତି ଯେ ଜଗତ୍ ଅସତ୍ୟ, ଆଶ୍ରୟଶୂନ୍ୟ ଓ ଈଶ୍ୱର-ଶୂନ୍ୟ; କେବଳ ସ୍ତ୍ରୀ ପୁରୁଷର ସମ୍ବନ୍ଧରୁ ଉତ୍ପନ୍ନ । ଏଥିରେ ବିଷୟ ଭୋଗ ଛଡ଼ା ଆଉ କଣ କାରଣ ଥାଇ ପାରେ ? । ୮ ।

ଭୟଙ୍କର ( କ୍ରୂର ) କର୍ମକାରୀ ମନ୍ଦମତି ଦୁଷ୍ଟମାନେ ଏହି ଅଭିପ୍ରାୟ ଅବଲମ୍ବନ କରି ଜଗତର ଶତ୍ରୁ ହୋଇ ଜଗତର ନାଶ ପାଇଁ ଉତ୍ପନ୍ନ ହୁଅନ୍ତି । ୯ ।

ଦୁଷ୍ପୂର କାମନାରେ ପରିପୂର୍ଣ୍ଣ, ଦମ୍ଭପରାୟଣ, ମାନୀ, ମଦାନ୍ଧ, ଅଶୁଭସଙ୍କଳ୍ପଯୁକ୍ତ ହୋଇ ମୋହବଶରେ ମନ୍ଦଇଚ୍ଛା ଗ୍ରହଣ କରି ( କର୍ମରେ ) ପ୍ରବୃତ୍ତ ହୁଅନ୍ତି । ୧୦ ।

ପ୍ରଳୟ ପର୍ଯ୍ୟନ୍ତ ଯାହାର ଅନ୍ତ ନାହିଁ ଏପରି ଅପରିମେୟ ଚିନ୍ତାର ଆଶ୍ରୟ ନେଇ କାମନାପରମଭୋଗୀ ( ଭୋଗହିଁ ସର୍ବସ୍ୱ ) ଏହି ରୂପ ନିଶ୍ଚୟକାରୀ ଶତ ଆଶାର ଜାଲରେ ପଡ଼ି କାମୀ, କ୍ରୋଧୀ, ବିଷୟ ଭୋଗ ନିମନ୍ତେ ଅନ୍ୟାୟପୂର୍ବକ ଦ୍ରବ୍ୟ ସଞ୍ଚୟ ଇଚ୍ଛାକରେ । ୧୧, ୧୨ ।

ଆଜ ଏହା ପାଇଲି, ଏଇ ମନୋରଥ ପୂର୍ଣ୍ଣହେଲା, ଏତେ ଧନ ମୋର ଅଛି, ଭବିଷ୍ୟତରେ ଆଉ ଏତେ ହେବ, ଏଇ ଶତ୍ରୁକୁ ମାରିଛି, ଅପରକୁ ମାରିବି, ମୁଁ ସର୍ବସମ୍ପନ୍ନ, ମୁଁ ଭୋଗୀ, ମୁଁ ସିଦ୍ଧ, ମୁଁ ବଳମାନ୍, ମୁଁ ସୁଖୀ, ମୁଁ ଶ୍ରୀମନ୍ତ, ମୁଁ କୁଳୀନ, ମୋପରି ଆଉ କିଏ ଅଛି, ମୁ ଯଜ୍ଞ କରିବି, ଦାନ କରିବି, ଆନନ୍ଦ କରିବି — ଅଜ୍ଞାନରେ ମୂଢ ହୋଇ ଲୋକ ଏହିପରି ମନେକରେ ଏବଂ ଅନେକ ଭ୍ରମରେ ପଡ଼ି, ମୋହଜାଲରେ ଜଡ଼ିତ ହୋଇ, ବିଷୟ ଭୋଗରେ ମତ୍ତ ହୋଇ ଅଶୁଚି ନରକରେ ପଡେ । ୧୩, ୧୪, ୧୫, ୧୬ ।

ନିଜକୁ ବଡ଼ ଗଣ୍ୟକାରୀ, ବେଶଭୂଷାପରାୟଣ (ଗର୍ବିତ) ଏବଂ ଧନ ଓ ମାନ ମଦରେ ମତ୍ତ (ଲୋକ) ଦମ୍ଭ ହେତୁରୁ ବିଧିବର୍ଜିତ ଓ ନାମକୁ ମାତ୍ର ଯଜ୍ଞ କରିଥାଏ । ୧୭ ।

ଅହଙ୍କାର, ବଳ, ଦର୍ପ, କାମ ଓ କ୍ରୋଧର ଆଶ୍ରୟ ନେଇ ନିନ୍ଦାକାରୀମାନେ ସେମାନଙ୍କ ଭିତରେ ଓ ଅନ୍ୟମାନଙ୍କ ଭିତରେ ଅବସ୍ଥିତ ମୋତେ ଦ୍ୱେଷ କରିଥାନ୍ତି । ୧୮ ।

ଏହି ନୀଚ, ଦ୍ୱେଷପରାୟଣ, କ୍ରୂର, ଅମଙ୍ଗଳକାରୀ ନରାଧମମାନଙ୍କୁ ଏ ସଂସାରରେ ଅତ୍ୟନ୍ତ ଆସୁରୀ ଯୋନିରେ ବାରିବାର ନିକ୍ଷେପ କରିଥାଏଁ । ୧୯ ।

ହେ କୌନ୍ତେୟ, ଜନ୍ମ ଜନ୍ମ ଆସୁରୀଯୋନି ପାଇ ଓ ମୋତେ ନ ପାଇ ଏହି ମୂଢ଼ମାନେ ଏହିପରି ଏକାବେଳେକେ ଅଧମ ଗତି ପାନ୍ତି ।୨୦।

କାମ, କ୍ରୋଧ ଓ ଲୋଭ—ଆତ୍ମାକୁ ନାଶ କରିବା ନିମନ୍ତେ ନରକର ଏ ତିନୋଟି ଦ୍ୱାର । ସେହିହେତୁରୁ ମନୁଷ୍ୟ ଏ ତିନୋଟି ତ୍ୟାଗ କରିବା ଉଚିତ୍ । ୨୧ ।

ହେ କୌନ୍ତେୟ, ଏହି ତିନିଧ ନରକର ଦ୍ୱାରରୁ ଦୂରରେ ରହି ମନୁଷ୍ୟ ଆତ୍ମାର କଲ୍ୟାଣ ଆଚରଣ କରେ ଏବଂ ତଦ୍ୱାରା ପରମ ଗତି ପ୍ରାପ୍ତ ହୁଏ । ୨୨ ।

ଯେ ବ୍ୟକ୍ତି ଶାସ୍ତ୍ରବିଧି ତ୍ୟାଗ କରି ସ୍ୱଇଚ୍ଛାରେ ଭୋଗରେ ଲୀନ ହୁଏ ସେ ସିଦ୍ଧି ପାଏ ନାହିଁ, ସୁଖ ପାଏ ନାହିଁ, ପରମଗତି ପାଏ ନାହିଁ ।୨୩।

ଟିପ୍ପଣୀ—ଶାସ୍ତ୍ରବିଧି ଅର୍ଥରେ ଧର୍ମଗ୍ରନ୍ଥରେ ପ୍ରଦତ୍ତ ହୋଇଥିବା ଅନେକ କ୍ରିୟା ନୁହେଁ; ପରନ୍ତୁ ଅନୁଭବ ଜ୍ଞାନଯୁକ୍ତ, ସତପୁରୁଷ-ପ୍ରଦର୍ଶିତ ସଂଯମ ମାର୍ଗ ।

ସେହି ହେତୁରୁ କାର୍ଯ୍ୟ ଓ ଅକାର୍ଯ୍ୟ ନିର୍ଣ୍ଣୟ କରିବା ପାଇଁ ତୁମେ ଶାସ୍ତ୍ରକୁ ପ୍ରମାଣ ଜାଣିବ । ଶାସ୍ତ୍ରବିଧି କ'ଣ ତାହା ଜାଣି ଏ ଲୋକରେ ତୁମର କର୍ମ କରିବାର ଉଚିତ୍ । ୨୪ ।

ଟିପ୍ପଣୀ—ଯାହାଁ ଉପରେ ବୁଝାଯାଇ ଅଛି ଏଠାରେ ମଧ୍ୟ ଶାସ୍ତ୍ର ଶବ୍ଦର ସେହି ଅର୍ଥ । ସମସ୍ତଙ୍କର ନିଜ ନିଜ ନିୟମ ଗଢି ସ୍ୱେଚ୍ଛାଚାରୀ ହେବା ଉଚିତ ନୁହେଁ । ବରଂ ଧର୍ମର ଅନୁଭବିକାରୀମାନଙ୍କର ବାକ୍ୟକୁହିଁ ପ୍ରମାଣ ବୋଲି ଗଣନା କରିବା ଉଚିତ । ଏହାହିଁ ଏହି ଶ୍ଳୋକର ଅର୍ଥ ।

ଓଁ ତତ୍ସତ୍

ଏହିପରି ଶ୍ରୀମଦ୍‌ଭଗବଦ୍ଗୀତାରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀ କୃଷ୍ଣାର୍ଜୁନ ସମ୍ବାଦର ଦୈବାସୁର ସମ୍ପଦ ବିଭାଗ ଯୋଗ ନାମକ ଷୋଡ଼ଶ ଅଧ୍ୟାୟର ସମାପ୍ତି ।

—–—※—–—

( ୧୭ )

## ଶ୍ରଦ୍ଧାତ୍ରୟ ବିଭାଗ ଯୋଗ

ଶାସ୍ତ୍ର ଅର୍ଥାତ୍ ଶିଷ୍ଟାଚାରକୁ ପ୍ରମାଣ ମାନିବା ଉଚିତ୍ । ଏହା ଶୁଣିବାରୁ ଅର୍ଜୁନଙ୍କର ଶଙ୍କା ହେଲା ଯେ ଶିଷ୍ଟାଚାରକୁ ଏଡ଼ି ଶ୍ରଦ୍ଧା ସହିତ ଯେ କାର୍ଯ୍ୟ କରେ ତାର ଗତି କ'ଣ ହୁଏ ? ଏହି ପ୍ରଶ୍ନର ଉତ୍ତର ଦେବାର ଚେଷ୍ଟା ଏହି ଅଧ୍ୟାୟରେ କରାଯାଇ ଅଛି । ଅଧିକନ୍ତୁ ଶିଷ୍ଟାଚାର-ରୂପକ ବଣାଘରକୁ ଛାଡ଼ିଦେଲେ ଶ୍ରଦ୍ଧାରେ ଭୟର ସମ୍ଭାବନା । ଏହା କହି ଭଗବାନ ସନ୍ତୁଷ୍ଟ ହୋଇଅଛନ୍ତି । ଏହି କାରଣରୁ ଶ୍ରଦ୍ଧା ଏବଂ ତହିଁରୁ ଉତ୍ପନ୍ନ ଯଜ୍ଞ, ତପ, ଦାନ ଆଦି କ୍ରିୟାକୁ ଗୁଣଭେଦରେ ତିନିଭାଗ କରି ବୁଝାଇ ଅଛନ୍ତି ଏବଂ ଓଁ ତତ୍ସତ୍‌ର ମହିମାକୁ ଗାଇ ଅଛନ୍ତି ।

ଅର୍ଜୁନ କହିଲେ—ହେ କୃଷ୍ଣ, ଶାସ୍ତ୍ରବିଧି ଅର୍ଥାତ୍ ଶିଷ୍ଟାଚାର ପ୍ରତି ଦୃଷ୍ଟି ନ ଦେଇ ଯେ କେବଳ ଶ୍ରଦ୍ଧାର ସହିତ ପୂଜା ଉପାସନା

କରେ ତାହାର କି ଗତି ହୁଏ ? ତାହା ସାତ୍ତ୍ୱିକ, କି ରାଜସିକ ଅଥବା ତାମସିକ ? ।୧।

ମନୁଷ୍ୟର ସ୍ୱଭାବଜାତ ଶ୍ରଦ୍ଧା ତ୍ରିବିଧ, ଯଥା—ସାତ୍ତ୍ୱିକୀ, ରାଜସୀ ଓ ତାମସୀ । ତାହା ତୁମ୍ଭେ ଶୁଣ । ୨ ।

ହେ ଭାରତ, ସମସ୍ତଙ୍କର ଶ୍ରଦ୍ଧା ନିଜ ନିଜର ସ୍ୱଭାବ ଅନୁରୂପ ହୋଇଥାଏ । ମନୁଷ୍ୟର କିଛି ନା କିଛି ହେଲେ ଶ୍ରଦ୍ଧା ଅଛି । ଯାହାର ଯେପରି ଶ୍ରଦ୍ଧା ସେ ସେପରି ହୁଏ । ୩ ।

ସାତ୍ତ୍ୱିକ ଲୋକ ଦେବତାମାନଙ୍କର ପୂଜା କରେ । ରାଜସିକ ଲୋକ ଯକ୍ଷ ଓ ରାକ୍ଷସମାନଙ୍କର ପୂଜା କରେ ଏବଂ ଅନ୍ୟାନ୍ୟ ତାମସୀ ଲୋକେ ପ୍ରେତ ଓ ଭୂତଗଣଙ୍କର ପୂଜା କରନ୍ତି । ୪ ।

ଦମ୍ଭ ଓ ଅହଙ୍କାରଯୁକ୍ତ ଲୋକେ କାମ ଓ ରାଗ ଉତ୍ପନ୍ନ ବଳର ଅଧୀନ ହୋଇ ଅଶାସ୍ତ୍ରବିହିତ ଘୋରତପ ଅନୁଷ୍ଠାନ କରନ୍ତି । ସେହି ମୂଢ଼ ଲୋକେ ଶରୀରସ୍ଥ ପଞ୍ଚମହାଭୂତକୁ ଏବଂ ଅନ୍ତଃକରଣରେ ସ୍ଥିତ ମୋତେ ମଧ୍ୟ କଷ୍ଟ ଦିଅନ୍ତି । ସେମାନଙ୍କୁ ଅସୁରସମ୍ଭାରଯୁକ୍ତ ବୋଲି ଜାଣ । ୫,୬ ।

ଆହାର ମଧ୍ୟ ତିନିପ୍ରକାରରେ ପ୍ରିୟ ହୋଇଥାଏ । ଯଜ୍ଞ, ତପ, ତଥା ଦାନ ସେହିପରି ( ତିନିପ୍ରକାର ପ୍ରିୟ ) ଅଟେ । ଏହିମାନଙ୍କର ଭେଦ ଶୁଣ । ୭ ।

ଆୟୁ, ସାତ୍ତ୍ୱିକ-ଭାବ, ବଳ, ଆରୋଗ୍ୟ, ସୁଖ ଓ ରୁଚି ଯାହାଦ୍ୱାରା ବୃଦ୍ଧି ପାଏ; ଯାହା ରସଯୁକ୍ତ, ଯାହା ସ୍ନିଗ୍ଧ, ଯାହା ପୁଷ୍ଟିକାରକ ଓ ମନର ତୃପ୍ତିକର ସେହିପରି ଆହାର ସାତ୍ତ୍ୱିକ ଲୋକର ପ୍ରିୟ ଅଟେ । ୮ ।

ପିତା, ଖଟା, ଲୁଣିଆ, ଅତି ଗରମ, ତୀକ୍ଷ୍ଣ, ରୁକ୍ଷ ଏବଂ ଦାହକାରକ ଆହାର ରାଜସ ଲୋକଙ୍କୁ ଭଲଲାଗେ । ଏହା ଦୁଃଖ, ଶୋକ ଓ ରୋଗ ଉତ୍ପନ୍ନକାରୀ ଅଟେ । ୯ ।

ଯାହା ଅନେକ ସମୟରୁ ପଡ଼ି ରହିଥାଏ, ଯହିଁରେ କିଛି ରସ ନ-ଥାଏ, ଯାହା ଗନ୍ଧାଉଥାଏ ଏବଂ ଯାହା ବାସୀ ଓ ଉଚ୍ଛିଷ୍ଟ ଏପରି ଅପବିତ୍ର ଖାଦ୍ୟ ତାମସ ଲୋକର ପ୍ରିୟ ଅଟେ । ୧୦ ।

ଫଳ ପାଇବା ଇଚ୍ଛା ନ ରଖି ନିଜର କର୍ତ୍ତବ୍ୟ ବୋଲି ଭାବି ବିଧିପୂର୍ବକ ମନଦେଇ ଯାହା କରାଯାଏ ତାହା ସାତ୍ତ୍ୱିକ ଯଜ୍ଞ ଅଟେ ।୧୧।

ହେ ଭରତଶ୍ରେଷ୍ଠ, ଫଳଲାଭର ଇଚ୍ଛା ରଖି କିମ୍ବା ଦମ୍ଭ ଅର୍ଥାତ୍ ଲୋକେ ମୋତେ ବଡ଼ଲୋକ ବୋଲି ଭାବନ୍ତୁ ଏପରି ଉଦ୍ଦେଶ୍ୟ ରଖି ଯାହା କରାଯାଏ ତାହା ରାଜସ ଯଜ୍ଞ ଅଟେ । ୧୨ ।

ଯେଉଁ ଯଜ୍ଞରେ ବିଧିବିଧାନ ନ ଥାଏ, ଯହିଁରୁ ଅନ୍ନ ଉତ୍ପତ୍ତି ହୁଏ ନାହିଁ, ଯହିଁରେ ମନ୍ତ୍ର ନ ଥାଏ, ଯହିଁରେ ତ୍ୟାଗ ନ ଥାଏ କିମ୍ବା ଶ୍ରଦ୍ଧାଭାବ ମଧ୍ୟ ନ ଥାଏ, ସେପରି ଯଜ୍ଞକୁ ପଣ୍ଡିତମାନେ ତାମସ ଯଜ୍ଞ କହନ୍ତି । ୧୩ ।

ଦେବତା, ବ୍ରାହ୍ମଣ, ଗୁରୁ ଏବଂ ଜ୍ଞାନୀର ପୂଜା, ପବିତ୍ରତା, ସରଳତା, ବ୍ରହ୍ମଚର୍ଯ୍ୟ, ଅହିଂସା ଇତ୍ୟାଦିକୁ ଶାରୀରିକ ତପ କୁହାଯାଏ । ୧୪ ।

କାହାରିକୁ ଦୁଃଖ ନ ଦେବା, ସତ୍ୟ, ପ୍ରିୟ ଓ ହିତକଥା କହିବା, ଧର୍ମଗ୍ରନ୍ଥ ଅଭ୍ୟାସ କରିବା ଇତ୍ୟାଦିକୁ ବାଚିକ ତପ କୁହାଯାଏ । ୧୫ ।

ମନର ପ୍ରସନ୍ନତା, ସୌମ୍ୟତା, ମୌନ, ଆତ୍ମସଂଯମ ଓ ପବିତ୍ର ଚିନ୍ତା ଇତ୍ୟାଦିକୁ ମାନସିକ ତପ କୁହାଯାଏ । ୧୬ ।

ସମଭାବାପନ୍ନ ବ୍ୟକ୍ତିଗଣ ଫଳ ପାଇବାର ଇଚ୍ଛା ନ ରଖି ପରମଶ୍ରଦ୍ଧା ପୂର୍ବକ ଯେତେବେଳେ ଉପରୋକ୍ତ ତିନିପ୍ରକାରର ତପ କରନ୍ତି ତାହାକୁ ବୁଦ୍ଧିମାନ୍ ଲୋକେ ସାତ୍ତ୍ୱିକ ତପ କହନ୍ତି । ୧୭ ।

ସତ୍କାର, ମାନ ଓ ପୂଜା ପାଇବା ଉଦ୍ଦେଶ୍ୟରେ ଦମ୍ଭପୂର୍ବକ ଯାହା କରାଯାଏ ତାହା ରାଜସିକ ତପ । ଏହି ରାଜସିକ ତପର ଫଳ କ୍ଷଣସ୍ଥାୟୀ, ତାହା ପୁଣି ଅନିଶ୍ଚିତ ଅଟେ । ୧୮ ।

ଅତି କଷ୍ଟରେ ମୂଢ଼ଗ୍ରାହକଙ୍କ ଅର୍ଥାତ୍ ଅପରର ଅନିଷ୍ଟ କରିବା ଇଚ୍ଛାରେ ଯାହା କରାଯାଏ ତାହା ତାମସ ତପ ଅଟେ । ୧୯ ।

ଦାନ କରିବା କର୍ତ୍ତବ୍ୟ ଏପରି ବୁଦ୍ଧି ପ୍ରତ୍ୟୁପକାରର ଆଶା ନ ରଖି ଦେଶ କାଳ ଓ ପାତ୍ରକୁ ବିବେଚନା କରି ଯାହା ଦିଆଯାଏ ତାହା ସାତ୍ତ୍ୱିକ ଦାନ ଅଟେ । ୨୦ ।

ପ୍ରତିଦାନର ଉଦ୍ଦେଶ୍ୟରେ ଅଥବା ଅନ୍ୟ କୌଣସି ଫଳଲାଭର ଆଶାରେ ଯେଉଁ ଦାନ ଅତିକଷ୍ଟରେ ଦିଆଯାଏ, ସେପରି ଦାନକୁ ରାଜସ ଦାନ କହନ୍ତି । ୨୧ ।

ଦେଶ କାଳ ଓ ପାତ୍ରର କୌଣସି ବିଚାର ନ କରି ବିନା ସତ୍କାରରେ ଅବଜ୍ଞାପୂର୍ବକ ଯେଉଁ ଦାନ ଦିଆଯାଏ ତାହାକୁ ତାମସ ଦାନ କହନ୍ତି । ୨୨ ।

ଓଁ, ତତ୍, ସତ୍; ଏହିପରି ତିନି ପ୍ରକାରରେ ବ୍ରହ୍ମଙ୍କୁ ବର୍ଣ୍ଣନା କରାଯାଇଅଛି । ଏହାକୁ ଅବଲମ୍ବନ କରି ପୂର୍ବ କାଳରେ ବ୍ରାହ୍ମଣ, ବେଦ ଓ ଯଜ୍ଞ ନିର୍ମିତ ହୋଇଅଛି । ୨୩ ।

ଏହି କାରଣରୁ ବ୍ରହ୍ମବାଦୀମାନେ ଓଁ ଉଚ୍ଚାରଣ କରି ଯଜ୍ଞ, ଦାନ ଓ ତପ ଆଦି କ୍ରିୟାକୁ ସର୍ବଦା ବିଧିମତେ କରିଥାନ୍ତି । ୨୪ ।

ପୁଣି ଯେଉଁମାନେ ମୋକ୍ଷ ପାଇବାକୁ ଇଚ୍ଛା କରନ୍ତି ସେମାନେ 'ତତ୍' ବୋଲି ଉଚ୍ଚାରଣ କରି, କୌଣସି ପ୍ରକାର ଫଳଲାଭର ଇଚ୍ଛା ନ ରଖି ଯଜ୍ଞ, ଦାନ ଓ ତପରୂପକ ବିବିଧ କ୍ରିୟା ସମ୍ପାଦନ କରନ୍ତି । ୨୫ ।

ସତ୍ୟ ଓ କଲ୍ୟାଣ ଅର୍ଥରେ ସତ୍ ଶବ୍ଦର ପ୍ରୟୋଗ ହୁଏ । ହେ ପାର୍ଥ, ଉତ୍ତମ କର୍ମକୁ ଉଲ୍ଲେଖ କରିବାକୁ ହେଲେ 'ସତ୍' ଶବ୍ଦ ମଧ୍ୟ ବ୍ୟବହୃତ ହୁଏ । ୨୬ ।

ଯଜ୍ଞ, ତପ ଓ ଦାନରେ ଦୃଢ଼ଭାବକୁ ମଧ୍ୟ ସତ୍ କୁହାଯାଏ । ତନ୍ନିମିତ୍ତ ହିଁ କର୍ମ ଏପରି ସଙ୍କଳ୍ପକୁ ମଧ୍ୟ ସତ୍ କୁହାଯାଏ । ୨୭ ।

ଟିପ୍ପଣୀ—ଉପରିଲିଖିତ ତିନି ଶ୍ଲୋକର ଭାବାର୍ଥ ଏହି ଯେ ପ୍ରତ୍ୟେକ କର୍ମକୁ ଈଶ୍ୱରାର୍ପଣ କରିବା ଉଚିତ୍ । କାରଣ ଓଁ କହିଲେ ସତ୍ ଓ ସତ୍ୟକୁ ବୁଝାଏ । ତାହାଙ୍କୁ କର୍ମ କେବଳ ଅର୍ପଣ କଲେ ଅର୍ପଣକାରୀ ଊର୍ଦ୍ଧ୍ୱଗାମୀ ହୁଏ ।

ହେ ପାର୍ଥ, ଯଜ୍ଞ, ଦାନ, ତପ କିମ୍ବା ଅନ୍ୟ କିଛି କାର୍ଯ୍ୟ ଯାହା ଶ୍ରଦ୍ଧାଶୂନ୍ୟରେ କରାଯାଏ ତାହାକୁ ଅସତ୍ କହନ୍ତି । ଇହଲୋକ କିମ୍ବା ପରଲୋକ କେଉଁଠାରେ ହେଲେ ତାହା ଫଳପ୍ରଦ ହୁଏ ନାହିଁ । ୨୮ ।

ଓଁ ତତ୍‌ସତ୍ ।

ଏହିପରି ଶ୍ରୀମଦ୍‌ଭଗବଦ୍ଗୀତାରୂପକ ଉପନିଷଦ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରରେ ଶ୍ରୀ କୃଷ୍ଣାର୍ଜୁନ ସମ୍ବାଦର ଶ୍ରଦ୍ଧାତ୍ରୟ ବିଭାଗ ଯୋଗ ନାମକ ସପ୍ତଦଶ ଅଧ୍ୟାୟର ସମାପ୍ତି ।

———

( ୧୮ )

## ସନ୍ନ୍ୟାସ ଯୋଗ

ଏହି ଅଧ୍ୟାୟକୁ ଉପସଂହାରରୂପେ ଗଣନା କରାଯାଇ ପାରେ । ଏହାକୁ ଗୀତାର ପ୍ରେରକ ମନ୍ତ୍ର କୁହାଯାଏ । "ସବୁ ଧର୍ମକୁ ଛାଡ଼ି ମୋର

ଶରଣ ନଅ' ଏହାହିଁ ଯଥାର୍ଥ ସନ୍ନ୍ୟାସ । କିନ୍ତୁ ସବୁ ଧର୍ମକୁ ତ୍ୟାଗ କରିବା ଅର୍ଥ ସମସ୍ତ କର୍ମକୁ ତ୍ୟାଗ କରିବାକୁ ବୁଝାଏ ନାହିଁ । ପରୋପକାର କର୍ମରେ ଯାହା ସବୁଠାରୁ ଉତ୍ତମ କର୍ମ ତାହା ଈଶ୍ୱରଙ୍କୁ ଅର୍ପଣ କରି ଫଳାଫଳର ଇଚ୍ଛା ନ ରଖିବା ହେଉଛି ସର୍ବଧର୍ମତ୍ୟାଗ ତଥା ସନ୍ନ୍ୟାସ ।

ଅର୍ଜୁନ କହିଲେ—ହେ ମହାବାହୋ, ହେ ହୃଷୀକେଶ, ହେ କେଶୀନିସୂଦନ, ସନ୍ନ୍ୟାସ ଓ ତ୍ୟାଗ ମଧ୍ୟରେ ଭିନ୍ନ ଭିନ୍ନ ରହସ୍ୟ କ'ଣ ଅଛି ତାହା ମୁଁ ଜାଣିବାକୁ ଇଚ୍ଛାକରେ । ୧ ।

ଶ୍ରୀଭଗବାନ କହିଲେ—କାମ୍ୟ (କାମନାରୁ ଜାତ) କର୍ମ ତ୍ୟାଗକୁ ଜ୍ଞାନୀମାନେ ସନ୍ନ୍ୟାସ ବୋଲି ଜାଣନ୍ତି । ସମସ୍ତ କର୍ମର ଫଳତ୍ୟାଗକୁ ବିଦ୍ୱାନ୍ ଲୋକେ ତ୍ୟାଗ କହନ୍ତି । ୨ ।

ଅନେକ ବିଚାରବାନ୍ ପୁରୁଷଙ୍କ ମତରେ ପ୍ରତ୍ୟେକ କର୍ମ ଦୋଷମୟ ଅଟେ, ସୁତରାଂ ତାହା ତ୍ୟାଗ କରିବା ଦରକାର । ଅନ୍ୟ କାହାର କାହାର ମତରେ ଯଜ୍ଞ, ଦାନ ଓ ତପ ଇତ୍ୟାଦି କର୍ମକୁ ତ୍ୟାଗ କରିବା ଠିକ୍ ନୁହେଁ । ୩ ।

ହେ ଭରତସତ୍ତମ, ମୋ' ମତରେ ତ୍ୟାଗ କ'ଣ ତାହା ତୁମେ ଶୁଣ । ହେ ପୁରୁଷବ୍ୟାଘ୍ର, ତ୍ୟାଗ ତିନି ପ୍ରକାରରେ ବର୍ଣ୍ଣିତ ହୋଇଅଛି । ୪ ।

ଯଜ୍ଞ, ଦାନ ଓ ତପରୂପକ କର୍ମକୁ ତ୍ୟାଗ କରିବାର ନୁହେଁ; ତାହା ବରଂ କର୍ତ୍ତବ୍ୟ ଅଟେ । କାରଣ ଯଜ୍ଞ, ଦାନ ଓ ତପ ବିବେକୀ ବ୍ୟକ୍ତିକୁ ପବିତ୍ର କରେ । ୫ ।

ହେ ପାର୍ଥ, ଆସକ୍ତି ଫଳାଫଳର ଆଶାକୁ ତ୍ୟାଗକରି ଯେଉଁମାନେ ନିୟତ କର୍ମକୁ କେବଳ କର୍ତ୍ତବ୍ୟରୂପେ ପାଳନ କରନ୍ତି ସେମାନଙ୍କର ସେହି ତ୍ୟାଗକୁ ସାତ୍ତ୍ୱିକ ତ୍ୟାଗ କୁହାଯାଏ । ୬, ୭, ୮, ୯ ।

ଯାହାଙ୍କର ସଂଶୟ ଦୂର ହୋଇଥାଏ, ଯାହାଙ୍କର ଭାବନା ପବିତ୍ର, ଯେ ତ୍ୟାଗୀ ଓ ବୁଦ୍ଧିମାନ୍ ସେ ଅସୁବିଧାଜନକ କର୍ମ କରିବାରେ ମନରେ କିଛି କଷ୍ଟ କରନ୍ତି ନାହିଁ, ତଥା ସୁବିଧାଜନକ କର୍ମ କରିବାକୁ ଆଗ୍ରହ ମଧ୍ୟ ପ୍ରକାଶ କରନ୍ତି ନାହିଁ । ୧୦ ।

ଦେହଧାରୀ ମନୁଷ୍ୟ କୌଣସି ମତେ ସବୁ ପ୍ରକାରର କର୍ମ ଛାଡ଼ି ନ ପାରେ । ଅଧିକନ୍ତୁ ଯେ କେବଳ କର୍ମର ଫଳକୁ ତ୍ୟାଗକରି ପାରନ୍ତି ସେ ପ୍ରକୃତ ତ୍ୟାଗୀ ଅଟନ୍ତି । ୧୧ ।

ଯେଉଁମାନେ କର୍ମଫଳରେ ଅସକ୍ତ, ଅର୍ଥାତ୍ ଯେଉଁମାନେ ତ୍ୟାଗୀ ନୁହନ୍ତି ସେମାନଙ୍କୁ କାଳେ କାଳେ ଶୁଭ, ଅଶୁଭ ଓ ଶୁଭାଶୁଭ ଏପରି ତିନି ପ୍ରକାରର କର୍ମଫଳ ଭୋଗ କରିବାକୁ ହୁଏ; ମାତ୍ର ତ୍ୟାଗୀ ଅଥବା ସନ୍ନ୍ୟାସୀକୁ କିଛି ଭୋଗ କରିବାକୁ ପଡ଼େ ନାହିଁ । ୧୨ ।

ହେ ମହାବାହୋ, ପ୍ରତ୍ୟେକ କର୍ମ କିପରି ସିଦ୍ଧ ହୁଏ ସେ ବିଷୟ ନେଇ ସାଂଖ୍ୟ ଶାସ୍ତ୍ରରେ ପାଞ୍ଚୋଟି କାରଣ ଲେଖା ଅଛି । ତାହା ମୋ'ଠାରୁ ଶୁଣ । ୧୩ ।

କ୍ଷେତ୍ର, କର୍ତ୍ତା, ଭିନ୍ନ ଭିନ୍ନ ସାଧନ ଓ ଭିନ୍ନ ଭିନ୍ନ କ୍ରିୟା ଏବଂ ପଞ୍ଚମ ଦୈବ ଏହି ସବୁ ପାଞ୍ଚ କାରଣ ଅଟେ । ୧୪ ।

ମନୁଷ୍ୟ ଶରୀର, ବାକ୍ୟ ଓ ମନଦ୍ୱାରା ଯାହା କିଛି ନ୍ୟାୟ ବା ଅନ୍ୟାୟ କର୍ମ କରେ ଏହି ପାଞ୍ଚଟି ତହିଁର କାରଣ ଅଟେ । ୧୫ ।

ଏପରି ସ୍ଥଳେ ମଳିନବୁଦ୍ଧି ଲୋକ କେବଳ ନିଜକୁ 'କର୍ତ୍ତା' ବୋଲି ମନେକରେ । ଏହି ଦୁର୍ମତି ଅନ୍ୟ କିଛି ବୁଝେ ନାହିଁ । ୧୬ ।

ଯାହାର ଅହଂଭାବ ଲୋପ ପାଇଅଛି, ଯାହାର ବୁଦ୍ଧି ମଳିନ ନୁହେଁ, ସେ ସମସ୍ତ ଲୋକଙ୍କୁ ନାଶ କଲେ ମଧ୍ୟ ପ୍ରକୃତପକ୍ଷେ ସେ ହତ୍ୟାକାରୀ ନୁହେଁ, କିମ୍ବା ସେ କର୍ମ ବନ୍ଧନରେ ପଡେ ନାହିଁ । ୧୭ ।

ଟିପ୍ପଣୀ—ବାହ୍ୟଦୃଷ୍ଟିରେ ପାଠକଲେ ଏହି ଶ୍ଳୋକଦ୍ୱାରା ମନୁଷ୍ୟ ଭ୍ରମରେ ପଡ଼ି ପାରେ । ଗୀତାର ଅନେକ ଶ୍ଳୋକ କାଳ୍ପନିକ ଆଦର୍ଶ ଉପରେ ଅଧିଷ୍ଠିତ । ତାହାର ଯଥାର୍ଥ ନମୁନା ଏ ଜଗତରେ ମିଳି ନପାରେ । ବ୍ୟବହାର କମିତ୍ର ଜ୍ୟାମିତି ଶାସ୍ତ୍ରରେ ଯେପରି କାଳ୍ପନିକ ଆଦର୍ଶ ଚିହ୍ନ ଲୋଡ଼ା ହୁଏ, ଧର୍ମ ବ୍ୟବହାରରେ ସେହିପରି ହୁଏ । ସୁତରାଂ ଏହି ଶ୍ଳୋକରୁ ଏପରି ଅର୍ଥ ବାହାର କରିଯାଇ ପାରେ କି ଯାହାର ଅହଂକାର କୁଳ ଭସ୍ମୀଭୂତ ହୋଇଅଛି, ଯାହାର ମନରେ ଲେଶ ମାତ୍ର ମଇଳା ନାହିଁ, ସେ ସମସ୍ତ ଜଗତକୁ ସ୍ୱଚ୍ଛନ୍ଦରେ ସଂହାର କରିପାରେ ଏପରି କୁହାଯାଇ ପାରେ । କିନ୍ତୁ ଯାହାର ଅହଂକାର ନାହିଁ ତାହାର ଶରୀର ନାହିଁ । ଯାହାର ବୁଦ୍ଧି ବିଶୁଦ୍ଧ ସେ ତ୍ରିକାଳଦର୍ଶୀ । ଏପରି ବ୍ୟକ୍ତି ସ୍ୱୟଂ ଭଗବାନଙ୍କ ଛଡ଼ା ଅନ୍ୟ କେହି ନୁହେଁ । ସେ ସବୁ କର୍ମ କରୁଥିଲେ ମଧ୍ୟ କିଛି କରନ୍ତି ନାହିଁ, ସଂହାରକର୍ତ୍ତା ହେଲେ ମଧ୍ୟ ଅହିଂସାପରାୟଣ ଅଟନ୍ତି । ଏତଏବ ମନୁଷ୍ୟ ପକ୍ଷରେ ସଂହାର ନ କରିବା ଶିଷ୍ଟାଚାର ଓ ଶାସ୍ତ୍ରସମ୍ମତ ଏକମାତ୍ର ମାର୍ଗ ।

ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା ଏପରି ତିନୋଟି ତତ୍ତ୍ୱ କର୍ମ ପ୍ରେରଣାରେ ରହିଅଛି । ଇନ୍ଦ୍ରିୟ, କର୍ମ ଓ କର୍ତ୍ତା ଏହି ତିନୋଟି କର୍ମର ଅଙ୍ଗ ଅଟନ୍ତି । ୧୮ ।

ଟିପ୍ପଣୀ—ଏଥିରେ ବିଚାର ଓ ଆଚାରକୁ ସମୀକରଣ କରା ହୋଇଅଛି । ପ୍ରଥମତଃ ମନୁଷ୍ୟ କର୍ତ୍ତବ୍ୟ କର୍ମ ( ଜ୍ଞେୟ ) ତାହାର ବିଧି ( ଜ୍ଞାନ ) କୁ ଜାଣେ, ଅର୍ଥାତ୍ ପରିଜ୍ଞାତା ହୁଏ । କର୍ମ ପ୍ରେରଣାର ଏଭଳି ଶ୍ରେଣୀ ବିଭାଗ ହୋଇଗଲା ପରେ ମନୁଷ୍ୟ ଇନ୍ଦ୍ରିୟ ( କରଣ ) ଦ୍ୱାରା କ୍ରିୟାର କର୍ତ୍ତା ହୁଏ । ଏହାକୁ କର୍ମ ସଂଗ୍ରହ କହନ୍ତି ।

ଜ୍ଞାନ, କର୍ମ ଓ କର୍ତ୍ତା ଗୁଣଭେଦ ଅନୁସାରେ ତିନି ପ୍ରକାର । ଗୁଣଗଣନାରେ ଏହା ଯେପରି ବର୍ଣ୍ଣିତ ହୋଇଅଛି ତାହା ଶୁଣ । ୧୯ ।

ଯେଉଁ ଜ୍ଞାନ ବଳରେ ସବୁ ପ୍ରାଣୀଙ୍କ ମଧ୍ୟରେ ଏକ ଅବିନାଶୀ ଭାବ, ଏବଂ ସମସ୍ତ ପାର୍ଥକ୍ୟ ମଧ୍ୟରେ ଏକତା ଅନୁଭୂତ ହୁଏ ସେପରି ଜ୍ଞାନକୁ ସାତ୍ତ୍ୱିକ ଜ୍ଞାନ କୁହାଯାଏ । ୨୦ ।

ଭିନ୍ନ ଭିନ୍ନ ରୂପରେ ଦେଖା ଯାଉଥିବା ହେତୁ ମନୁଷ୍ୟ ଯେଉଁ ଜ୍ଞାନଦ୍ୱାରା ସମସ୍ତ ପ୍ରାଣୀଙ୍କ ଭିତରେ ନାନା ଭାବରେ ଥିବା ଭାବକୁ ପୃଥକ୍ ରୂପରେ ଦେଖେ ତାହାକୁ ରାଜସ ଜ୍ଞାନ କହନ୍ତି । ୨୧ ।

କୌଣସି କାରଣ ନଥାଇ ଗୋଟିଏ କାର୍ଯ୍ୟରେ ସମସ୍ତ ଭାବ ଏକତ୍ରିତ ଥିବାର ଅଳ୍ପ ଯେଉଁ ଜ୍ଞାନଦ୍ୱାରା ଜଣାଯାଏ ସେହିଳି ଅଯଥା ଓ ତୁଚ୍ଛ ଜ୍ଞାନକୁ ତାମସ ଜ୍ଞାନ କହନ୍ତି । ୨୨ ।

ଫଳ ପାଇବାର ଇଚ୍ଛା ନରଖି ଆସକ୍ତି ଓ ରାଗ ଦ୍ୱେଷକୁ ଛାଡ଼ି ମନୁଷ୍ୟ ଯେଉଁ ନିୟତ କର୍ମ କରେ ସେହି କର୍ମକୁ ସାତ୍ତ୍ୱିକ କର୍ମ କୁହାଯାଏ । ୨୩ ।

ଟିପ୍ପଣୀ—ତୃତୀୟ ଅଧ୍ୟାୟର ଅଠ ଶ୍ଳୋକର ଟିପ୍ପଣୀ ଦେଖ ।

ଫଳଭୋଗ କରିବାକୁ ଇଚ୍ଛା କରି "ମୁଁ କରୁଛି" ଏହିଳି ଅହଂଭାବ ରଖି ବହୁ ପରିଶ୍ରମରେ ମନୁଷ୍ୟ ଯେଉଁ କର୍ମ କରେ ସେପରି କର୍ମକୁ ରାଜସ କର୍ମ କହନ୍ତି ।

କର୍ମର ପରିଣାମ, କ୍ଷୟକ୍ଷତି, ହିଂସାଭାବ ଓ ନିଜର ସାମର୍ଥ୍ୟ ଇତ୍ୟାଦି ବିଷୟକୁ ବିଚାର ନକରି କେବଳ ମୋହରେ ପଡ଼ି ମନୁଷ୍ୟ ଯେଉଁ କର୍ମ କରେ ସେପରି କର୍ମକୁ ତାମସ କର୍ମ କହନ୍ତି । ୨୫ ।

ଯାହାଙ୍କର ଆସକ୍ତି ନଥାଏ କିମ୍ବା ଅହଂକାର ନଥାଏ, ଯାହାଙ୍କର ଦୃଢ଼ତା ଓ ଉତ୍ସାହ ଅଛି, ଯେ କର୍ମର ସଫଳତା ଓ ନିଷ୍ଫଳତାରେ ସୁଖଦୁଃଖ ଅନୁଭବ କରନ୍ତି ନାହିଁ । ସେ ସାତ୍ତ୍ୱିକ କର୍ତ୍ତା ଅଟନ୍ତି । ୨୬ ।

ଯେ ରାଗୀ, ଯେ କର୍ମଫଳରେ ଅସକ୍ତ, ଯେ ଲୋଭୀ, ହିଂସାତ୍ମକ ଓ ଅପବିତ୍ର, ଯେ ହର୍ଷ ଶୋକରେ ଅଭିଭୂତ ତାହାଙ୍କୁ ରାଜସକର୍ତ୍ତା କହନ୍ତି । ୨୭ ।

ଯେ ଅବ୍ୟବସ୍ଥିତ ଯେ ଅସଂସ୍କାରୀ, ଝୁକି, ଶଠ, ନୀଚ, ଅଳସୁଆ, ବିଷାଦଦୃଷ୍ଟ ଓ ଦୀର୍ଘସୂତ୍ରୀ ଅର୍ଥାତ୍ ଦିନକ କାମକୁ ଦୁଇଦିନ କରେ, ଏପରି ବ୍ୟକ୍ତିକୁ ତାମସକର୍ତ୍ତା କହନ୍ତି । ୨୮

ହେ ଧନଞ୍ଜୟ, ବୁଦ୍ଧି ଓ ଧୃତିର ମଧ୍ୟ ଗୁଣ ପ୍ରମାଣେ ଭିନ୍ନ ଭିନ୍ନ ଯେଉଁ ତିନି ପ୍ରକାର ଭେଦ ଅଛି ସେ ସବୁ କହୁଛି ଶୁଣ । ୨୯ ।

ପ୍ରବୃତ୍ତି ନିବୃତ୍ତି, କାର୍ଯ୍ୟ ଅକାର୍ଯ୍ୟ,ଭୟ ଅଭୟ, ବନ୍ଧନ ଓ ମୋକ୍ଷର ଭେଦ ଯେଉଁ ବୁଦ୍ଧି ଯଥାର୍ଥ ପ୍ରମାଣେ ବୁଝିପାରେ ସେହି ବୁଦ୍ଧିକୁ ସାତ୍ତ୍ୱିକ ବୁଦ୍ଧି କୁହାଯାଏ । ୩୦ ।

ଧର୍ମ ଅଧର୍ମ ଓ କାର୍ଯ୍ୟ ଅକାର୍ଯ୍ୟ ମୀମାଂସା ଯେଉଁ ବୁଦ୍ଧି ଅନୁଚିତ ପ୍ରମାଣ କରେ ସେହି ବୁଦ୍ଧିକୁ ହେ ପାର୍ଥ ! ରାଜସ ବୁଦ୍ଧି କୁହାଯାଏ । ୩୧ ।

ହେ ପାର୍ଥ, ଯେଉଁ ବୁଦ୍ଧି ତମୋଗୁଣଦ୍ୱାରା ଆବୃତ ହୋଇ ଅଧର୍ମକୁ ଧର୍ମରୂପେ ବୁଝେ ଏବଂ ସବୁ ବିଷୟର ଓଲଟା ଅର୍ଥ କରେ ସେହି ବୁଦ୍ଧିକୁ ତାମସ ବୁଦ୍ଧି କୁହାଯାଏ । ୩୨ ।

ଯେଉଁ ଏକନିଷ୍ଠ ଧୃତିର ବଳରେ ମନୁଷ୍ୟ ମନ ପ୍ରାଣ ଏବଂ ଇନ୍ଦ୍ରିୟ କ୍ରିୟାମାନଙ୍କୁ ସାମ୍ୟ ବୁଦ୍ଧିଦ୍ୱାରା ଧାରଣ କରେ, ହେ ପାର୍ଥ, ସେହି ଧୃତିକୁ ସାତ୍ତ୍ୱିକ ଧୃତି କୁହାଯାଏ । ୩୩ ।

ହେ ପାର୍ଥ, ଫଳାକାଙ୍କ୍ଷୀ ହୋଇ ଯେଉଁ ଧୃତିଦ୍ୱାରା ମନୁଷ୍ୟ ଧର୍ମ, କାମ ଓ ଅର୍ଥକୁ ଆସକ୍ତିପୂର୍ବକ ଧାରଣ କରେ ସେହି ଧୃତି ରାଜସୀ ଅଟେ । ୩୪ ।

ହେ ପାର୍ଥ, ଯେଉଁ ଧୃତି ହେତୁ ମୂଢ଼ ଲୋକ ନିଦ୍ରା, ଭୟ, ଶୋକ, ନୈରାଶ୍ୟ ଓ ମଦକୁ ଛାଡ଼ି ପାରେ ନାହିଁ, ତାହାକୁ ତାମସୀ ଧୃତି କୁହାଯାଏ । ୩୫ ।

ହେ ଭରତର୍ଷଭ, ସୁଖ ତିନି ପ୍ରକାର ଅଟେ । ତାହା କ'ଣ ଏଥର ମୋ'ଠାରୁ ଶୁଣ । ଯେଉଁ ଅଭ୍ୟାସରୁ ମନୁଷ୍ୟ ପ୍ରସନ୍ନ ରହେ, ଯହିଁରେ ଦୁଃଖ ଦୂର ହୋଇଯାଏ, ଯାହା ଆରମ୍ଭରେ ବିଷପରି ଏବଂ ପରିଣାମରେ ଅମୃତ ପରି ବୋଧହୁଏ, ଯାହା ଆତ୍ମଜ୍ଞାନର ପ୍ରସନ୍ନତାରୁ ଜାତ, ତାହାକୁ ସାତ୍ତ୍ୱିକ ସୁଖ କୁହାଯାଏ । ୩୬,୩୭ ।

ବିଷୟ ଓ ଇନ୍ଦ୍ରିୟର ସଂଯୋଗରୁ ଯେଉଁ ସୁଖ ମିଳେ ତାହା ପ୍ରଥମେ ଅମୃତ ପରି ବୋଧହୁଏ, ମାତ୍ର ପରିଣାମରେ ତାହା ବିଷ ତୁଲ୍ୟ । ସେହି ସୁଖକୁ ରାଜସ ସୁଖ କୁହାଯାଏ । ୩୮ ।

ଯାହା ଆରମ୍ଭ ଏବଂ ପରିଣାମରେ ମଧ୍ୟ ଆତ୍ମାର ମୋହକର, ଯାହା ନିଦ୍ରା, ଆଳସ୍ୟ ଓ ପ୍ରମାଦରୁ ଜାତ ସେପରି ସୁଖକୁ ତାମସ ସୁଖ କୁହାଯାଏ । ୩୯ ।

ପୃଥିବୀ, ଆକାଶ କିମ୍ବା ଦେବତାମାନଙ୍କ ମଧ୍ୟରେ, କିମ୍ବା ଦେବଲୋକରେ ତଥା ସ୍ୱର୍ଗରେ ଏପରି କିଛି ପଦାର୍ଥ ନାହିଁ ଯାହା କି ପ୍ରକୃତିର ଏହି ତିନି ଗୁଣରୁ ମୁକ୍ତ ରହିପାରେ । ୪୦ ।

ହେ ପରନ୍ତପ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ପ୍ରଭୃତିଙ୍କର କର୍ମ ସେମାନଙ୍କର ସ୍ୱଭାବଗତ ଗୁଣ ଅନୁସାରେ ବିଭାଗ କରାଯାଇ ଅଛି । ୪୧ ।

ଶମ, ଦମ, ତପ, ଶୌଚ, କ୍ଷମା, ସରଳତା, ଜ୍ଞାନ, ଅନୁଭବ, ଆସ୍ତିକତା ଇତ୍ୟାଦି ବ୍ରାହ୍ମଣର ସ୍ୱଭାବଗତ କର୍ମ ଅଟେ । ୪୨ ।

ଶୌର୍ଯ୍ୟ, ତେଜ, ଧୃତି, ଦକ୍ଷତା, ଯୁଦ୍ଧରେ ପଶ୍ଚାତ୍ପଦ ନ ହେବା, ଦାନ, ଶାସନ ଇତ୍ୟାଦ କ୍ଷତ୍ରିୟର ସ୍ୱଭାବଗତ କର୍ମ । ୪୩ ।

କୃଷି, ଗୋରକ୍ଷା, ବାଣିଜ୍ୟ, ବୈଶ୍ୟର ସ୍ୱଭାବଗତ କର୍ମ ଏବଂ ସେବା ଶୂଦ୍ରର ସ୍ୱଭାବଗତ କର୍ମ ଅଟେ । ୪୪ ।

ମନୁଷ୍ୟ ନିଜ କର୍ମରେ ରତ ରହି ମୋକ୍ଷ ଲାଭ କରେ । ନିଜ କର୍ମରେ ରତ ରହି ମନୁଷ୍ୟ କିପରି ମୋକ୍ଷଲାଭ କରେ ତାହା ଶୁଣ । ୪୫ ।

ଯାହାଙ୍କଠାରୁ ପ୍ରାଣୀମାନେ ଜାତ ହୋଇ ଅଛନ୍ତି ସେ ସମସ୍ତ ଜଗତରେ ବ୍ୟାପ୍ତ ହୋଇ ରହି ଅଛନ୍ତି । ତାହାଙ୍କୁ ଯେ ନିଜ କର୍ମଦ୍ୱାରା ଭଜନ କରେ ସେ ମୋକ୍ଷ ଲାଭ କରେ । ୪୬ ।

ପରଧର୍ମ ପାଳିବାକୁ ଯେତେ ସହଜ ବୋଧ ହେଲେ ମଧ ନିଜ ଧର୍ମ ଦୋଷଯୁକ୍ତ ହେଉ ପଛକେ ତାହାଠାରୁ ଅଧିକ କଲ୍ୟାଣକର ଅଟେ । କାରଣ ସ୍ୱଭାବ ଅନୁରୂପ କର୍ମ କଲେ ମନୁଷ୍ୟ ପାପରେ ଭାଗୀ ହୁଏ ନାହିଁ । ୪୭ ।

ଟିପ୍ପଣୀ—ସ୍ୱଧର୍ମ ଏଠାରେ ନିଜର କର୍ତ୍ତବ୍ୟକୁ ବୁଝାଏ । କର୍ମଫଳ ତ୍ୟାଗହିଁ ଗୀତା ଶିକ୍ଷାର ମୂଳମନ୍ତ୍ର ଅଟେ । ନିଜର କର୍ମକୁ ଛାଡ଼ି ଅପରର ଉତ୍ତମ କର୍ମ ଖୋଜିବାରେ ଫଳତ୍ୟାଗର ସ୍ଥାନ ଆଉ ରହେ ନାହିଁ । ଏହି କାରଣରୁ ସ୍ୱଧର୍ମକୁ ଶ୍ରେଷ୍ଠ ବୋଲି କୁହା ହୋଇଅଛି । ଏହାକୁ ପାଳନ କଲେ ଅପର ସବୁ ଧର୍ମର ଫଳ ମିଳିଯାଏ ।

ହେ କୌନ୍ତେୟ, ଯେଉଁ କର୍ମ ସହଜରେ ପ୍ରାପ୍ତ ଅର୍ଥାତ୍ ଯାହା ସ୍ୱଭାବର ଅନୁକୂଳ, ତହିଁରେ ଯେବେ ଦୋଷ ଥିଲେ ମଧ ତାହା ଛାଡ଼ିଦେବା ଉଚିତ ନୁହେଁ । କାରଣ ଅଗ୍ନିରେ ଯେପରି ଧୂଆଁ ଥାଏ, ସେପରି ପ୍ରତ୍ୟେକ କର୍ମରେ ଦୋଷ ରହିଅଛି । ୪୮ ।

ଯେ କାହାଁରେ ଅସକ୍ତ ନ ରଖି କାମନାକୁ ତ୍ୟାଗ କରି, ମନକୁ ଜିଣିଛନ୍ତି, ସେ ସନ୍ନ୍ୟାସ ବଳରେ ନୈଷ୍କର୍ମ୍ୟରୂପକ ପରମ ସିଦ୍ଧି ଲାଭ କରନ୍ତି । ୪୯ ।

ହେ କୌନ୍ତେୟ, ସିଦ୍ଧିପ୍ରାପ୍ତ ହୋଇ ମନୁଷ୍ୟ କିପରି ବ୍ରହ୍ମକୁ ଲାଭ କରେ ତାହା ସଂକ୍ଷେପରେ ମୋ'ଠାରୁ ଶୁଣ । କାରଣ ଏହାହିଁ ଜ୍ଞାନର ପରାକାଷ୍ଠା ଅଟେ । ୫୦ ।

ଯାହାଙ୍କର ବୁଦ୍ଧି ଶୁଦ୍ଧ ହୋଇଅଛି, ଏପରି ଯୋଗୀ ଦୃଢ଼ତା ପୂର୍ବକ ନିଜକୁ ବଶୀଭୂତ କରି ଶବ୍ଦାଦି (ଇନ୍ଦ୍ରିୟମାନଙ୍କର) ବିଷୟଙ୍କୁ ତ୍ୟାଗକରି, ରାଗ ଓ ଦ୍ୱେଷକୁ ଜିଣି, ଏକାନ୍ତ ସ୍ଥାନରେ ବାସ କରି, ଅଳ୍ପାହାର କରି, ଶରୀର, ବାକ୍ୟ ଓ ମନକୁ ଅଧୀନ କରି, ଧ୍ୟାନ ଯୋଗରେ ନିତ୍ୟ ପରାୟଣ ରହି, ବୈରାଗ୍ୟ ଅବଲମ୍ବନପୂର୍ବକ, ଅହଂକାର, ବଳ, ଦର୍ପ, କାମ, କ୍ରୋଧ ଓ ପରିଗ୍ରହକୁ ପରିତ୍ୟାଗ କରି, ମମତାଶୂନ୍ୟ ହୋଇ ଓ ଶାନ୍ତଭାବ ଧାରଣ କରି ବ୍ରହ୍ମଭାବ ଲାଭ କରିବାକୁ ସମର୍ଥ ହୁଅନ୍ତି । ୫୧, ୫୨, ୫୩ ।

ବ୍ରହ୍ମଭାବକୁ ଲାଭ କରିଥିବା ପ୍ରସନ୍ନଚିତ୍ତ ମନୁଷ୍ୟ ଶୋକ କରେ ନାହିଁ, କିମ୍ବା କୌଣସି ବିଷୟପ୍ରତି ଆକାଂକ୍ଷା ପୋଷଣ କରେ ନାହିଁ । ସେ ସମସ୍ତ ପ୍ରାଣୀଙ୍କ ପ୍ରତି ସମଭାବ ରଖି ମୋର ପରମ ଭକ୍ତିଭାବକୁ ଲାଭ କରନ୍ତି । ୫୪ ।

ମୁଁ କିପରି ଏବଂ ମୁଁ କିଏ ଏହା ସେ ଭକ୍ତିବଳରେ ଯଥାର୍ଥରୂପେ ଜାଣି ପାରନ୍ତି । ମୋତେ ଏଭଳି ଯଥାର୍ଥରୂପେ ଜାଣିଲା ପରେ ମୋ'ଠାରେ ପ୍ରବେଶ କରନ୍ତି । ୫୫ ।

ମୋର ଆଶ୍ରୟ ଯେଉଁ ବ୍ୟକ୍ତି ଗ୍ରହଣ କରିଥାନ୍ତି, ସେ ସବୁବେଳେ ସବୁ କର୍ମ କଲେ ମଧ୍ୟ ମୋର କୃପା ବଳରେ ଶାଶ୍ୱତ ଅବ୍ୟୟ ପଦ ଲାଭ କରନ୍ତି । ୫୬ ।

ମନେ ମନେ ସମସ୍ତ କର୍ମକୁ ମୋ'ଠାରେ ସମର୍ପଣ କରି ମତ୍ ପରାୟଣ ହୋଇ ବିବେକ ବୁଦ୍ଧିର ଆଶ୍ରୟରେ ନିରନ୍ତର ମୋଠାରେ ଚିତ୍ତକୁ ସ୍ଥିର ରଖ । ୫୭ ।

ମୋଠାରେ ଚିତ୍ତକୁ ସ୍ଥିର ରଖିଲେ ମୋର କୃପା ଲାଭ କରି ସଙ୍କଟରୂପକ ପାହାଡ଼ ସବୁ ପାର ହୋଇଯିବ । କିନ୍ତୁ ଅହଙ୍କାର ରଖି ମୋ କଥା ନ ଶୁଣିଲେ ବିନାଶପ୍ରାପ୍ତ ହେବ । ୫୮ ।

ଅହଙ୍କାରବଶ ହୋଇ "ମୁଁ ଲଢ଼ିବି ନାହିଁ" ବୋଲି ଯଦି ତୁମ୍ଭେ ଭାବିଥାଅ, ତେବେ ତୁମ୍ଭର ଏହା ନିଶ୍ଚୟ ମିଥ୍ୟା ଅଟେ । କାରଣ ତୁମ୍ଭର ସ୍ୱଭାବ ବଳପୂର୍ବକ ତୁମ୍ଭକୁ ଟାଣି ନେଇ ଯୁଦ୍ଧରେ ପକାଇବ । ୫୯ ।

ହେ କୌନ୍ତେୟ, ନିଜର ସ୍ୱଭାବଗତ କର୍ମରେ ତୁମ୍ଭେ ବନ୍ଧା । ସୁତରାଂ ମୋହବଶ ହୋଇ ଯାହା ତୁମ୍ଭେ କରିବ ନାହିଁ ବୋଲି ଭାବୁଛ ପୁଣି ପରବଶ ହୋଇ ତୁମ୍ଭକୁ ତାହା କରିବାକୁ ପଡ଼ିବ । ୬୦ ।

ହେ ଅର୍ଜୁନ, ଈଶ୍ୱର ସମସ୍ତ ପ୍ରାଣୀଙ୍କ ହୃଦୟରେ ରହି ନିଜର ମାୟା ବଳରେ ମନୁଷ୍ୟଙ୍କୁ ଚକ୍ର ଉପରେ ଘଡ଼ା ଯେପରି ବୁଲେ, ସେପରି ବୁଲାଉ ଅଛନ୍ତି । ୬୧ ।

ହେ ଭାରତ, ସର୍ବପ୍ରକାରେ ତୁମେ ତାହାଙ୍କର ଶରଣ ନିଅ । କାରଣ ତାହାଙ୍କର କୃପାଲାଭ କରି ପରମ ଶାନ୍ତିମୟ ଅମର ପଦକୁ ତୁମ୍ଭେ ପାଇ ପାରିବ । ୬୨ ।

ଗୁପ୍ତଜ୍ଞାନ ମଧ୍ୟରେ ଯାହା ଅତି ଗୋପନୀୟ ସେପରି ଜ୍ଞାନ ମୁଁ ତୁମ୍ଭକୁ କହିଲି । ଏଣିକି ସେ ସବୁ ବିଚାର କରି ଯେପରି ତୁମ୍ଭକୁ ଉଚିତ୍ ବୋଧହୁଏ ସେପରି କର । ୬୩ ।

ସବୁଠାରୁ ଯାହା ଅତି ଗୋପନୀୟ ସେପରି ପରମ ବଚନ ପୁଣି ଶେଷରେ ଶୁଣ । ତୁମେ ମୋର ଅତ୍ୟନ୍ତ ପ୍ରିୟ । ତେଣୁ ତୁମ ହିତପାଇଁ କହିବି । ୬୪ ।

ମୋ'ଠାରେ ମନ ଲଗାଅ, ମୋର ଭକ୍ତ ହୁଅ, ମୋ' ନିମିତ୍ତ ଯଜ୍ଞ କର, ମୋତେ ନମସ୍କାର କର, ମୁଁ ସତ୍ୟ ପ୍ରତିଜ୍ଞା କରି କହୁଛି ଯେ ତୁମ୍ଭେ ମୋତେ ପାଇବ । କାରଣ ତୁମ୍ଭେ ମୋର ପ୍ରିୟ ଅଛ । ୬୫ ।

ସବୁଧର୍ମ ଛାଡ଼ି ତୁମେ କେବଳ ମୋର ଶରଣ ନିଅ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିବି । ଶୋକ କର ନାହିଁ । ୬୬ ।

ଯେ ତପସ୍ୱୀ ନୁହେଁ, ଯେ ଭକ୍ତ ନୁହେଁ, ଯେ ଶୁଣିବାକୁ ଇଚ୍ଛାକରେ ନାହିଁ ଏବଂ ଯେ ମୋର ଦ୍ୱେଷକରେ, ସେପରି ଲୋକକୁ ଏହି ଜ୍ଞାନ ତୁମ୍ଭେ କେବେ କହିବ ନାହିଁ । ୬୭ ।

କିନ୍ତୁ ଏହି ପରମ ଗୁହ୍ୟ ଜ୍ଞାନକୁ ଯେ ମୋର ଭକ୍ତମାନଙ୍କୁ ଶୁଣାଇବ ସେ ମୋ'ଠାରେ ଏରୂପ ପରମ ଭକ୍ତି କରିବାଦ୍ୱାରା ମୋତେ ନିଶ୍ଚୟ ପାଇବ । ୬୮ ।

ତାହାଠାରୁ ଆଉ କେହି ମୋର ଅଧିକ ପ୍ରିୟ ଏହି ମନୁଷ୍ୟ ଲୋକରେ ନାହିଁ, କିମ୍ବା ଏହି ପୃଥିବୀରେ ମଧ୍ୟ ତାହାଠାରୁ ଆଉ କେହି ମୋର ଅଧିକ ପ୍ରିୟ ହୋଇ ନ ପାରେ । ୬୯ ।

ଆମ୍ଭ ଦୁହିଙ୍କର ଏହି ଧର୍ମ ସଂବାଦକୁ ଯେ ଅଭ୍ୟାସ କରିବ, ଜ୍ଞାନ-ଯଜ୍ଞ ଦ୍ୱାରା ସେ ମୋତେ ଭଜୁଅଛି ବୋଲି ମୁଁ ବୁଝିବି । ୭୦ ।

ଅଧିକ ମଧ୍ୟ ଯେଉଁ ମନୁଷ୍ୟ ଦ୍ୱେଷଶୂନ୍ୟ ହୋଇ ଶ୍ରଦ୍ଧାପୂର୍ବକ ଏହାକୁ ଶୁଣିବ, ସେ ମଧ୍ୟ ମୁକ୍ତ ହୋଇ ଯାନ୍ତି ଏବଂ ପୁଣ୍ୟ କର୍ମମାନଙ୍କ ପରି ଶୁଭ ଲୋକରେ ବସନ୍ତି । ୭୧ ।

ଟିପ୍ପଣୀ— ଏହାର ସାର ମର୍ମ ଏହି ଯେ ଏହି ଜ୍ଞାନକୁ ଅନୁଭବ କରିଥିବା ବ୍ୟକ୍ତି କେବଳ ଅପରକୁ ଶୁଣାଇ ପାରେ । ଶୁଦ୍ଧ ଉଚ୍ଚାରଣ ସହିତ ଅର୍ଥ କରି ଯେ ଶୁଣାଏ ତାହାପାଇଁ ଉପର ଦୁଇ ଶ୍ଲୋକ ନୁହେଁ ।

ହେ ପାର୍ଥ, ଏହାକୁ ମନଦେଇ ତୁମେ ଶୁଣିଲ ତ ? ହେ ଧନଞ୍ଜୟ, ଅଜ୍ଞାନତା ଯୋଗୁଁ ତୁମ୍ଭର ଯେଉଁ ମୋହ ହୋଇଥିଲା ତାହା କଣ ଏବେ ନଷ୍ଟ ହେଲା ? ୭୨ ।

ଅର୍ଜ୍ଜୁନ କହିଲେ— ହେ ଅଚ୍ୟୁତ, ତୁମ୍ଭର କୃପାରୁ ମୋର ମୋହ ନାଶ ପାଇଅଛି । ମୋର ଜ୍ଞାନୋଦୟ ହୋଇଅଛି ଏବଂ ଶଙ୍କାସବୁ ଦୂର ହୋଇଥିବାରୁ ଚିତ୍ତ ସ୍ଥିର ହୋଇଅଛି । ଏଣିକି ତୁମ୍ଭର କଥାନୁସାରେ କାର୍ଯ୍ୟ କରିବି । ୭୩ ।

ସଞ୍ଜୟ କହିଲେ — ବାସୁଦେବ ଓ ମହାତ୍ମା ପାର୍ଥଙ୍କର ଏହିପରି ରୋମାଞ୍ଚକାରକ ଅଦ୍ଭୁତ ସମ୍ବାଦ ମୁଁ ଶୁଣିଲି । ୭୪ ।

ବ୍ୟାସଦେବଙ୍କ କୃପାରୁ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ଶ୍ରୀମୁଖରୁ ମୁଁ ଏହି ଗୋପନୀୟ ପରମ ଯୋଗ ଶୁଣିଲି । ୭୫ ।

ହେ ରାଜନ୍, କେଶବ ଓ ଅର୍ଜ୍ଜୁନଙ୍କର ଏହି ଅଦ୍ଭୁତ ଓ ପବିତ୍ର ସମ୍ବାଦକୁ ସ୍ମରଣ କରି ବାରମ୍ବାର ମୁଁ ଆନନ୍ଦ ଅନୁଭବ କରୁଅଛି । ୭୬ ।

ହେ ରାଜନ୍, ହରିଙ୍କର ସେହି ଅଦ୍ଭୁତ ରୂପକୁ ସ୍ମରଣ କରି ମୁଁ ଅତିଶୟ ଆଶ୍ଚର୍ଯ୍ୟ ହେଉଅଛି ଏବଂ ବାରମ୍ବାର ଆନନ୍ଦ ଅନୁଭବ କରୁଅଛି । ୭୭ ।

ଯେଉଁଠାରେ ଯୋଗେଶ୍ୱର କୃଷ୍ଣ, ଯେଉଁଠାରେ ଧନୁର୍ଦ୍ଧର ପାର୍ଥ ସେଠାରେ ଶ୍ରୀ, ବିଜୟ, ବୈଭବ ଓ ଅବିଚଳ ନୀତି ଅଛି ବୋଲି ମୋର ଧାରଣା । ୭୮ ।

ଟିପ୍ପଣୀ—ଯୋଗେଶ୍ୱର କୃଷ୍ଣ କହିଲେ ଅନୁଭବସିଦ୍ଧ ଶୁଦ୍ଧ ଜ୍ଞାନକୁ ଏବଂ ଧନୁର୍ଦ୍ଧାରୀ ଅର୍ଜ୍ଜୁନ କହିଲେ ତଦନୁକୂଳ କ୍ରିୟାକୁ ବୁଝାଏ । ଏହି ଉଭୟର ମିଳନ ଯେଉଁଠାରେ, ସେଠାରେ ସଞ୍ଜୟ କହିବା କଥା ଛଡ଼ା ଅନ୍ୟ କ'ଣ ହୋଇପାରେ ?

ଓଁ ତତ୍‌ସତ୍ ।

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତା ରୂପକ ଉପନିଷଦ୍ ଅର୍ଥାତ୍ ବ୍ରହ୍ମବିଦ୍ୟାନ୍ତର୍ଗତ ଯୋଗଶାସ୍ତ୍ରର ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦର ସନ୍ନ୍ୟାସଯୋଗ ନାମକ ଅଷ୍ଟାଦଶ ଅଧ୍ୟାୟର ସମାପ୍ତି ।

ଓଁ ଶାନ୍ତି ।




ମୁଦ୍ରାକର ଶ୍ରୀ ରାଧାନାଥ ରଥ, ସତ୍ୟବାଦୀ ପ୍ରେସ, କଟକ । ୧୯୩୧ ।